ଅଦ୍ଭୁତ ଚତୁଷଟ ଦେଖି ପୁସ୍ତକ କ୍ରୟ କର ।

# ଢୋଲୀଲା ନାଟକ ।

---*---

ଉଣାଣିଆ କଲ୍ୟାଣ ପୁର ନିବାସୀ

ଶ୍ରୀ ଦୟାନିଧି ଦାସଙ୍କ ଦ୍ୱାରା ବିରଚିତ

ଓ

ପ୍ରଥମବାର ପ୍ରକାଶିତ

---*---

Printed by P. C. Das.
at the Shakti Press, PURI.
1924.

---o---

ମୂଲ୍ୟ ଦୁଇଅଣା ମାତ୍ର

# ବିଜ୍ଞାପନ ।

—୦✵୦—

ଏଥିରେ ନୂତନ ରାଗ ରାଗିଣୀ ଯୁକ୍ତ ସଙ୍ଗୀତ ନାଟକଆକାରରେ କଥୋପକଥନ ଦ୍ୱାରା ଲେଖାହୋଇଅଛି ଏହା ପ୍ରତ୍ୟେକ ନାଟକ-ଦଳ ଓ ଯାତ୍ରାଦଳଙ୍କର ବିଶେଷ ଆଦରଧନ । ପାଠକବୃନ୍ଦ, ଏହାକୁ ମନଯୋଗ ସହକାରେ ଥରେ ମାତ୍ର ପାଠକଲେ ମୋହର ସମସ୍ତ ଶ୍ରମ-ସାର୍ଥକ ମଣିବି । ଗ୍ରାହକବୃନ୍ଦଙ୍କ ନିକଟରେ ବିଶେଷ ପ୍ରାର୍ଥନା ଏହି ଯେ, ନାଟକର ଯଦି କୌଣସି ଦୋଷାଦୋଷ ଥାଏ, ଆପଣ-ମାନଙ୍କର ନିଜର ଉଦାରଗୁଣରେ କ୍ଷମା ଦେବାହେବେ । ଆପଣମାନଙ୍କ-ଠାରୁ କୌଣସି ସଂଶୋଧନର ସାହାଯ୍ୟ ପାଇଲେ ଉକ୍ତ କାର୍ଯ୍ୟରେ ରତ-ହେବାର ଚେଷ୍ଟାକରିବି ଏଥିପୂର୍ବେ ଦ୍ରୋପଦୀ ହରଣନାମକ ଗୀତିନାଟ୍ୟ ଛପାହୋଇଅଛି ତାହା ମଧ୍ୟରେ କେତେକ ନାଟକର ସଂଖ୍ୟା ପାଇ-ନାହିଁବ ପୁନଶ୍ଚ ଏଣିକି ନୂତନସଂଖ୍ୟା ଅନ୍ୟ୨ ଆମ୍ଭନାମର ପୁସ୍ତକକୁ ପାଇପାରିବେ । ଇତି ।

| | | |
|---|---|---|
| କଲ୍ୟାଣପୁର<br>ମହିଁ ସାହି | } | ଆପଣଙ୍କର<br>ବିଶେଷପ୍ରାର୍ଥନୀୟ<br>କବି ଶ୍ରୀ ଦୟାନିଧିଦାସ |

( ନାଟ୍ୟୋକ୍ତବ୍ୟକ୍ତିଙ୍କର ସ୍ତ୍ରୀ ପୁରୁଷଙ୍କର ପାଠସଂଖ୍ୟା )

| ( ପୁରୁଷ ) | | ( ସ୍ତ୍ରୀ ) |
|---|---|---|
| ୧ । ନଟ | | ୧ । ନଟୀ |
| ୨ । ଜଗନ୍ନାଥ | | ୨ । ଲକ୍ଷ୍ମୀ |
| ୩ । ବଳରାମ | | ୩ । ସାଢବାଣୀ |
| ୪ । ପୁରୁଷପାର୍ଟ | | ୪ । ଅଦୃଷ୍ଟକୁମାରୀ |
| ୫ । ହ୍ୱାତ ,, | | ୫ । ଶ୍ରୀସ୍ୱାଗୁଣ୍ଡଲକ୍ଷ୍ମୀ |
| ୬ । ବିଶ୍ୱକର୍ମା | | ୬ । ଦାସୀ |
| ୭ । ବେତାଳ | | ୭ । ନିଦ୍ରାଦେବୀ |
| ୮ । କବିର | | ୮ । ଶାଶୁ ଓ ବୋହୂ |
| ୯ । ପବନ | | ୯ । ତୁଳସୀ |
| ୧୦ । ଯୋଗୀ | | ୧୦ । ମାହାରୀ |
| ୧୧ । ସୂର୍ଯ୍ୟ | | ୧୧ । ପାର୍ଶ୍ୱସ୍ତ୍ରୀ |
| ୧୨ । ଚନ୍ଦ୍ର | | |

——*——

# ଲକ୍ଷ୍ମୀ ଲୀଳା ନାଟକ ।

———*———

## ପ୍ରଥମ ଅଙ୍କ ।

### ପ୍ରଥମ ଦୃଶ୍ୟ ।

### ପ୍ରସ୍ତାବନା

( ନଟ ନଟୀଙ୍କର ପ୍ରବେଶ )

ନଟୀ—ପ୍ରାଣେଶ ! କି ପାଇଁ ଉଲ୍ଲସି ଆଜ ଉଠେ ବସୁନ୍ଧରା
ମଳୟ ଗନ୍ଧପୂରଇ ବହଇ ସମୀର
ଫୁଲୁଛନ୍ତି ଫୁଟିଣ କୁସୁମ
ଅତ୍ରମଧ୍ୟ ରବନ୍ତି କୋକିଳେ
ମୟୂରମାନଙ୍କ ରବ ଶୁକ ଶାରୀ ଗାନ
ଆଶ୍ଚର୍ଯ୍ୟ ମଣୁଛି, ଆଜ ଦେଖି ଏ ବଚନ
ଏଥିର କାରଣ ଈଶ କରନ୍ତୁ ପ୍ରକାଶ
ସନ୍ଦେହ ମୋଚନ ହେଉ ମୋର

ନଟ—ପ୍ରିୟେ ! ସ୍ଥିରମନେ ଶୁଣ କହେ ତାହା
ଆଜ ଶ୍ରୀ ଲକ୍ଷ୍ମୀଦେବୀଙ୍କ ଲୀଳାର ନାଟକ
ସଭାମଧ୍ୟେ ହେବ ତା ପ୍ରକାଶ
ତେଣୁ ସର୍ବ ଦିଶଇ ସୁଷମା

ନଟୀ—ନାଥ ! କେମନ୍ତେ ଲକ୍ଷ୍ମୀଦେବୀଙ୍କ ଲୀଳାର ନାଟକ
କହାଇବ ତା କରନ୍ତୁ ପ୍ରକାଶ

ନଟ—ପ୍ରେୟସି ! ମାତ ଲକ୍ଷ୍ମୀଙ୍କ ମହିମା ?
ଗୃହଲକ୍ଷ୍ମୀ ଲକ୍ଷ୍ମୀ ଦେବୀ ଦେବହଳ
ହରଙ୍କି ଭିଖିଲେ ଗୃହୁଁଗିର
ନିଷ୍ଠୁର ନିରସ ବାକ୍ୟ ଶୁଣି ଦେବହର

ଲକ୍ଷ୍ମୀଙ୍କି ସେ ତେଜଲେ ସତ୍ୱର
ଅନାଥିନୀ ହୋଇ ଦେଵୀ ଦୂର ହୋଇଗଲେ
ଗର୍ବଗଞ୍ଜି ବେନି ଭ୍ରାତାଙ୍କର
ପରେପୁଣି କଲେମାତ ଦୟା
ଆଜ ତାହା ଶୁଣିବ ପ୍ରକାଶେ
ସଭାମଧ୍ୟେ, ନାଟକର ପ୍ରଶ୍ନ
ତୋଷହେବେ ଭକ୍ତଜନେ ଶୁଣି
ନର୍ତ୍ତ୍ତୀ – ନାଥ ! ଏହିତେବେ ଲକ୍ଷ୍ମୀଦେବୀ ଲୀଳା
ଧନ୍ୟ ଲୀଳା ଅଟେ ଲକ୍ଷ୍ମୀଙ୍କର
ତୋଷହେଲୁ ଶୁଣି ଆଜ ତାହା
ଏବେ ସୁମଧୁରସ୍ୱରେ ଗାଇ ଏକ ଗାନ
ଗାନ ଶେଷେ କରନ୍ତୁ ପ୍ରସ୍ଥାନ ( ନଟନଟୀଙ୍କର ଗୀତ )

( ପ୍ରେମେରଙ୍ଗେ ସୁନୀଳଗଗନ ବୃତ୍ତେ )

ଜୟ ୨ ହେ ନୀଳଗିରୀଶ, ସାଗର ତନୟାଈଶ ହେ ପୀତବାସ ।
ଲକ୍ଷ୍ମୀଦେବୀଙ୍କର, ନାଟକେ ମୋହର,
ବଳିଅଛ ମନପ୍ରଭୁ ହେ ହୃଷିକେଶ । ପଦ ।
ସଦନ୍ତରେ ଦାଶରଥି, ପ୍ରକାଶ ଏଧାନ କାନ୍ତି,
ଏ ସଭସାଗରେ ପ୍ରଭୁହେଉ ପ୍ରକାଶ ।
ଚଉତଚନ୍ତ ଅନୁବ୍ରତେ କରଛ ଆସ ।
ଦୟାନିଧି ବର୍ଣ୍ଣେ, ହେ ବଦୁଶଜନେ,
ଲକ୍ଷ୍ମୀଦେବୀ ଲୀଳାଶୁଣି ହୁଅନ୍ତୁ ତୋଷ । ୧ ।

( ଉଭୟଙ୍କର ପ୍ରସ୍ଥାନ )

( ଦ୍ୱିତୀୟ ଦୃଶ୍ୟ )

ଜଗନ୍ନାଥଙ୍କର ପ୍ରବେଶ ।

ଜଗନ୍ନାଥ—ଓ ହୋ ! ଆଜ କାହିଁ ଅଙ୍ଗମୋର କମିତ ହୁଅଇ ।

ଥର ଥରେ ଥରଇ ମୋ ଦେହ
ଆବର ସ୍ଫୁରଇ ବାମଚକ୍ଷୁ
ବାମଅଙ୍ଗ କମ୍ପେ ଘନ୨
ଆବର କି ମୋତେ ପୁଣି ଦଶେ ହତଗିଣୀ
କି ଉତ୍ପାତ ହୋଇବ ଆଜରେ
ଏ ଅଦ୍ଭୁତ କଥା କିପାଁ ଆଜ ଅଛଘଟ
ଜଣାଯାଏ ଅମଙ୍ଗଳ ପର
ଆଉବା କି କାରଣ ଏହାର
ଯାଣି ମୁହିଁ ନ ପାରଇ କିଛି (ଲକ୍ଷ୍ମୀଙ୍କର ପ୍ରବେଶ)

ଲକ୍ଷ୍ମୀ—ପ୍ରଭୁ ! ଆଜ ମୋର ଅଟେ ବ୍ରତବାର
ଘଡ଼ଚରଚି ବ କିଛୁ ବ୍ରହ୍ମ ପତ୍ରଯନ୍ତ୍ରେ
ସୁହୃଦଙ୍ଗେ ଦଅନ୍ତୁ ବଦାୟ
ଅବଲମ୍ବେ କରନ୍ତୁ ମେଲଣି

ଜଗନ୍ନାଥ—ପ୍ରିୟେ ! ଦଶମିପାକର ପରେ ଭୋଜନ ଶେଷରେ
ବୋଲୁ ସୁଖେ ଯାଅ ନଗ୍ରକୁଳ ।

ଲକ୍ଷ୍ମୀ—ଯେଆଜ୍ଞା, ପ୍ରଭୁ (ପ୍ରଣାମ କରି ପ୍ରସ୍ଥାନ ) ଓ ପରେ ଜଗନ୍ନାଥଙ୍କର ପ୍ରସ୍ଥାନ ।



ତୃତୀୟ ଦୃଶ୍ୟ ।

( ସାଽବାଣୀର ପ୍ରବେଶ, ପରେ ଲକ୍ଷ୍ମୀଙ୍କର ପ୍ରବେଶ )

ଲକ୍ଷ୍ମୀ—କିଏ ସାଧବାଣି ?

ସାଧବାଣୀ—ହେଁ, ନାନ ?

ଲକ୍ଷ୍ମୀ—ତୁ କଣ ଠିଆହୋଇଅଛୁ, ତୁକଣ ସ୍ନାନ କରିନେ ହୁଁ, କେତେବେଳେ ଆଉ କଣ କରିବୁ, ଆଜପରା ଲକ୍ଷ୍ମୀଙ୍କର ବ୍ରତ ତୁ କଣ ଜାଣୁନାହୁଁ ?

ସାଧବାଣୀ—ନାନାଗୋସାଇଁ ! କେମନ୍ତେ ଲକ୍ଷ୍ମୀଙ୍କ ବ୍ରତ ହୁଅଇ ତା
କହ, ଅଇଲେ ମନକୁ ସେହି ବ୍ରତ କରିବଇଁ

ଲକ୍ଷ୍ମୀ—ସାଧବାଣି ! ଯେପ୍ରକାରେ ଲକ୍ଷ୍ମୀଙ୍କର ବ୍ରତହୁଏ, ମୁଁ ତାହା
କହୁଅଛି ଶୁଣ ।

ଗୀତ—( ଶୁଣ ହେ ଗିରିବର ତନୟା—ବୃତ୍ତେ )

ଶୁଣ ହେ ସାଧବାଣି ମୋ ବାଣୀ ଲକ୍ଷ୍ମୀଦେବୀ ପୂଜା ଯେମନ୍ତ !
ମାର୍ଗଶୀର ଆଦ୍ୟ ଗୁରୁବାର ପ୍ରାତୁ ଶଯ୍ୟାକୁ ଛାଡ଼ିବ ତୁରିତ । ପଦ ।
ସ୍ନାନେ ଶୁଚିବନ୍ତ ହୋଇ, ଗୃହସ୍ଥାନକୁ ମଣ୍ଡାଇ,
ଲିପି ଗୋମୟରେ, ଚିତା ଦ୍ୱାରେ ହେ ତଦନ୍ତେ ଶୁଣ ବୃତାନ୍ତ । ପଦ ।
ନୟନ୍ତି କର ଶୁକ୍ଳଧାନେ, କଳଶସ୍ଥାପି ଯତନେ ।
ନବଧାନେ ନବମାଣେ ସଜ୍ଜାଗିଣି କୁଙ୍କୁମେ କରମଣ୍ଡିତ । ୨ ।
ଧ୍ୟାନେ ତାଙ୍କୁ କର ଆବାହନ, ପୂଜିବ ସୁଚିତ୍ତେ ଏକମନ ।
ଧୂପାଦି ସହିତେ, ଅର୍ଘ୍ୟ ତୋଷଚିତ୍ତେ, ଭୋଗ ଲଗାଇବ ତଦନ୍ତ । ୩ ।
ନବଧାଭକ୍ତିରେ କରପୂଜା, ପରଦିନ ପ୍ରାତେନେଇ ଉଯା ।
ଦଧ୍ୟନ୍ନଧିଧାନ, ଏପୂଜା ବିଧାନ, ଶୁଣିକର ମୁକ୍ତି ଲଭିବ । ୪ ।

ଲକ୍ଷ୍ମୀ—ସାଧବାଣୀ ! ଏହି ପ୍ରକାରେ ପୂଜାକର । ଐଶ୍ୱର୍ଯ୍ୟ ଭୁଞ୍ଜି
ଅନ୍ତକାଳେ ବୈକୁଣ୍ଠ ପୁରକୁ ଯିବୁ ମୁଁ ଏବେ ଯାଉଅଛି !
ତୁଇ ସେହି ବ୍ରତକାର୍ଯ୍ୟରେ ତତ୍ପର ହୁଅ ।

ସାଧବାଣୀ—ନାନା ଗୋସାଇଁ ! ତୁମ୍ଭେ ଯାଅ ମୁଁ ଯାଉଅଛି ସେହିବ୍ରତ
କାର୍ଯ୍ୟରେ ଆୟୋଜନ କରିବ ।

( ସାଧବାଣୀର ପ୍ରସ୍ଥାନ )

( ଲକ୍ଷ୍ମୀଙ୍କର ବ୍ରାହ୍ମଣଙ୍କ ଗୃହେ ପ୍ରବେଶ )

ଲକ୍ଷ୍ମୀ—ଏ ସମସ୍ତ ବ୍ରାହ୍ମଣ ଗୃହ ! ଏମାନେ କଣ ମୋର ବ୍ରତ ଅଛି
ବୋଲି ଜାଣନ୍ତି ନାହିଁ, ଏ ସାହିରେ କଣ ଶଙ୍ଖ ପାଇନାହିଁ,
ସମସ୍ତେ ନିଦ୍ରିତ, ଜଣେହେଲେ କେହି ମୋର ପୂଜାରେ

ତତ୍‌ପର ନାହିଁ, ବେଳ ଅଛି ଦୁଇଘଡ଼ି ରହିଲାଣି,
ଏ ଅଲକ୍ଷଣୀ ବ୍ରାହ୍ମଣୀମାନେ କେହି ଶଯ୍ୟାରୁ ଉଠିନାହାନ୍ତି,
ଏବେ ଏହି ପଥରେ ଯାଇଁ, କିଏ କଣ କରୁଛି ଦେଖେ,

ପ୍ରଥମ ଅଙ୍କ — ଚତୁର୍ଥ ଦୃଶ୍ୟ

( ଅଦୃଷ୍ଟ କୁମାରୀମାନଙ୍କ ପ୍ରବେଶ )

ଗୀତ—( ଆନନ୍ଦେ ବିଭୋର ହୋଇ ନୃତ୍ୟ )
ମନାନନ୍ଦେ, ପ୍ରେମାନନ୍ଦେ, ସିନ୍ଧୁ ନନ୍ଦିନୀ ।
ବିଜୟ କର ଆଦେଶେ ଜଗଜ୍ଜନନୀ । ପଦ ।
ଧୀରେ ୨ ଧରାପରେ କଲେ ଗମନ ।
ଏକାଳେ ପୁରେ ଗୃହସ୍ଥାଳୀ କରଇ ଧ୍ୟାନ । ୧ ।
ଶୁଣି କର୍ଣ୍ଣେ ତାର ସ୍ତୁତି, ସଦୟରେ ଦୟାବତୀ ।
ଯାଚଣ ବର ଦିଅନ୍ତି ଜ୍ଞାନ ଦାୟିନୀ । ୨ ।

( ପ୍ରସ୍ଥାନ )

ପ୍ରଥମ ଅଙ୍କ — ୫ମ ଦୃଶ୍ୟ ।

( ଶ୍ରୀପୃ ଗୃହସ୍ଥାଳୁଣୀର ପ୍ରବେଶ )

ଶ୍ରୀପୃ—ଓ ହୋ ! କେତେବେଳଯାଏ ମୁଁ ଶୋଇପଡ଼ିଲି, ଆଜି ଶ୍ରୀ ଲକ୍ଷ୍ମୀ ଦେବୀଙ୍କ ଅଟେ ବ୍ରତବାର, କେତେବେଳେ କ କରିବ ମୁହିଁ, ଯାଏଁ ଆଗ ସ୍ନାନ କରିବାକୁ, ପରେ ହବ କରିବି ସଂଗ୍ରହ ।

( ସ୍ନାନରୁ ଆସି ପୂଜା କରିବା )

(ହାଡ଼ିର ପ୍ରବେଶ) ଗୀତ

ଆଜି ଶରାପ ପିଇକି ମନ ସ୍ଥିର ହୋଇଛି ॥
(ଆଜିବାବୁ) ନିଶାଧାତେ ଟଳମଳ ହୋଇ ପଡ଼ୁଛି । ପଦ ।
ଶୁଣିଆ ମା କେଣେ ଗଲା, ନିଶାରେ ଭାର ହୋଇଲା
ବୋଲେ ଦୟାନିଧି ଭଲା ନିଶା ଖାଇଛି ॥ ୧ ॥

ହାଡ଼ି—ଶୁଣିଆ ମା ୨ ତେନ୍ତୁଳିଫଡ଼ାଏ ଚକୁଳୀ ଦେଇଛ ଆଣିବୁ ଟି ନିଶାଟା

ଆଜି ବଡ଼ ଘୋର ହୋଇଛି ( କିଛିକ୍ଷଣପରେ) କାଠଲା ଘରେ ନାହୁଁ କି ? ଶୁନଥା ମା ୨ କଠଲା କୁଆଡ଼େ ଯାଇଛି କି ?

ଶ୍ରୀମ୍ବା— କାହିଁକି ମ ମହୁଆଠା ମଦଖାଇ କୁହୁରେ ୨ ଡାକୁଛୁ ମ, ମୁଁ ଏକ୍ଷଣି ଯାଇପାରେ ନା ଯା ।

(ହାଡ଼ିର ଗୀତ) କଳୁଆମା ବୃତ୍ତେ

ହାଡ଼ି — ଲୋ ଶାଳି ପୁରୁକାଗାଲ କାଠରେ ଘେନି ଘରେ ପଶିଅଛୁ
ତୋହର ପୁରିଲା କାଳ, ଆଜ ମୋ କବଳେ ପଡ଼ିଅଛୁ ।ପଦ।

ଶ୍ରୀମ୍ବା— ରେ ମୂଢ଼ ଅଧମ ଦ୍ୱନ୍ଦ କାହିପାଇଁ ମିଛେ କରୁଅଛୁ ॥
ନିଲଜ ନମାତେ ଲାଜ କେତେ ବଡ଼ି ବଡ଼ି କହୁଅଛୁ । ୧ ।

ହାଡ଼ି— ଶାଳିକି ଆଜ କାହିଁକି ଘରେ ମୋର କାଳୁ ପୁରାଇଛୁ ।
ଡାକିଲେ କ ପାଇଁ ଭଲେ ଆଗକୁତ ମୋର ନଆସୁଛୁ । ୨ ।

ଶ୍ରୀମ୍ବା— ରେ ମୂର୍ଖ ଆପଣ ଦେଖ କାହିଁପାଇଁ ମିଛେ ବକୁଅଛୁ ।
ଏ ଦୟାନିଧି ଅବୁଧି ଦ୍ୱାରେ କୁଦ କମ୍ପା ମରୁଅଛୁ । ୩ ॥

ହାଡ଼ି— ଆଲୋ ! ଏ ଆଡ଼କୁ ଠିକଏ ଆ ଭଲା, ଭିତରେ ପଶି କଣ ବର ବର ହେଉଛୁ ମ ?

ଶ୍ରୀମ୍ବା — ମୁଁ ତତା ପଖାଳ ଅଛି ଏକ୍ଷିଣି ଯାଇ ପାରେନା ଯା ।

ହାଡ଼ି — ହେଁ ୨ ଶାଳିତ ମୋର ପେର କଣ ବାହାହବାକୁ ଇଛା, କାହିଁକି, ମୁଁ କଣ ତୋର ମନ ଲାଗି ହେଲି ନାହିଁ । ନା ପୁରୁଣା ହୋଇ ଗଲିଣି ? ଏଣିକି ନୂତନ ବରରେ ଇଛା ସେଥିପାଇଁ ଅଗରୁ ନିତା ପଡ଼ିଲାଣି, ଆଛା ହେଉ ? ତୁ କିପରି ବାହାହବୁ, ତତେ କୋଉ ବର ଠା ବାହାହବାକୁ ଆସିବ ମୁଁ ଦେଖିବି ? ଏହି ଦୁଆର ମୁହଁରେ ମୁଁ ବାଡ଼ ଘେନି ବସିଥାଏ ଆଜ ତୋତେ ସେ ବରକୁ ଠିକ୍ କରିବି ।

ଶ୍ରୀମ୍ବା— ମିଛରେ କାହିଁକି ଏସୁତାକି ବକି ହେଉଛୁ ମ; ମଦଖାଇ ମାତାଲ ହୋଇ ଏଠି ଆସି ବାଲିଙ୍ଗି ହେଉଛୁ; କହୁଛି ବାଆ

ଘର ହୋଉଛ, କାହାକୁ ଘରେ ପୁରେଇଛ ; ମୁଁ ଆଜି ଲକ୍ଷ୍ମୀଙ୍କ ବ୍ରତ କରୁଛି ; ଏ ଆସି ଅଣ୍ଠା କରୁଛି, ଯାଯା ମଦୁଆଣ୍ଠା ଶୀଘ୍ର ମୋ ଆଗରୁ ଦୂର ହୁଅ ?

ହାଡ଼ି—ଆଲୋ ! ସେ ଲକ୍ଷ୍ମୀଣ୍ଠା କଏ ମୁଁ ନହେଲେ ସେ ତୋର ଏତେ ପ୍ରିୟ ହେଲା, ନା ତୁ ସେ କଥାକୁ ଛାଡ, ମୁଁ ଯାଉଛି ସେହି ଜାଗାରେ ବସିବ ତୁ ମତେ ପୂଜା କର ; ତାହେଲେ ପୂଜାର ଫଳ ପାଇବୁ ।

( ହାଡ଼ି ଲକ୍ଷ୍ମୀଙ୍କ ସ୍ଥାନାଧିକାର ଓ ଶ୍ରୀୟା ଠାରୁ ଅପମାନ )

ଶ୍ରୀୟା—ହିଠ୍ ହିଠ୍ ମଦୁଆଣ୍ଠା ଆସି ମୋ ଲକ୍ଷ୍ମୀଙ୍କ ସ୍ଥାନରେ ବସୁଅଛୁ ଶୀଘ୍ର ଉଠିଯା ନ ହେଲେ । ତୋରଗଣ୍ଡ ରଖିବି ନାହିଁ ।

( କାନ ମୋଡ଼ି ଉଠାଇ ଗୃପୁଡା )

ହାଡ଼ି—ଭାଇରେ ଏ ମାଇକିନାଙ୍କ ମାଡ ଫେରେ ଏତେ ମ.ଠା ! ଯେ ଏହାକୁ ଗୃହି ନାହିଁ ସେ କଣ ମନୁଷ୍ୟ, ପ୍ରାୟେ ଏପରି ପଦାର୍ଥ ସଂସାରରେ ନଥିବ ଯାହା ହେଉ ପୂଜାଠାରୁ ଅଧିକ ମୁଖ ଣ୍ଠା ମିଳିଗଲା, ତୁକଣ କରୁଛୁ କର ମୁଁ ଏବେ ଯାଉଅଛି ଲକ୍ଷ୍ମୀଙ୍କ ପ୍ରତି ଶ୍ରୀୟାର ସ୍ତୁତି ( ପ୍ରସ୍ଥାନ )

ଗୀତ—( ଜୟମା ବାରହେ ବୃତ୍ତେ )

ଜୟ ପଦ୍ମାଳୟା, ଜୟ ହରି ପ୍ରିୟା ଜୟ ମାତ ଜଗତ୍ ଜନନୀ ।
ଏଦୀନ ଦୁଃଖିତରେ, ଦୟା କର ବାରେ ; ଯେନ ଏ ଅଧମୀ ଦୟିନୀ । ପଦ । ଜପ ତପ ଆଦ କିଛି ନଜାଣଇଁ ଆବର ନୁହଇଁ ଶାସ୍ତ୍ର ଜ୍ଞାନ ଗୋ । କୃପାକର ବାରେ ; ଏ ଅଧମୀ ଗୃହରେ, ବିଜୟ କରନ୍ତୁ ସିନ୍ଧୁ ନନ୍ଦିନୀ । ୧ ।

ଲକ୍ଷ୍ମୀ—ତୋର ସ୍ତୁତି ଶୁଣି ଶ୍ରୀୟା ହେଲି ମୁଁ ସନ୍ତୋଷ ; ଏବେ ତୋର ଇଚ୍ଛା ହୁଏ ଯାହା, ଦେବି ବର ମାଗ ଲୋ ବଦନ

ଶ୍ରୀୟା—ଏ ଦୁଃଖିନୀଠାରେ ଯେବେ ଦୁର୍ଗତି ନାଶନ, ପ୍ରସନ୍ନେ ଦର୍ଶନ

ଦେଲ ଆସି; କି ବର ମାଗିବ ମାତ ମାଗି ନଜାଣଇଁ; ମାତ,
ଇଚ୍ଛା ହୁଏ ଯା ତୁମ୍ଭର, ଦୟାକର ଏ ଦୀନ ଦୁଃଖିରେ; ଦୟାବତୀ
ନଜାଣେ ମୁଁ କିଛି, ଦୟା ବହି ଦିଅ ମାତ ଶତେକ କୁଁର
ଅମର ବର ସହିତେ ଲକ୍ଷେ ଧେନୁ ମାତ, ଦତ୍ତ କର ଦିଅ
ବିତ୍ତ ଅକ୍ଷୟ ଭଣ୍ଡାର, ଏହି ମାତ୍ର ଶ୍ରୀପଦ୍ମରେ ମାଗୁଣି ମୋହର ।

ଲକ୍ଷ୍ମୀ—ପାଗଳଣୀ ହୋଇ ଗୃହଲକ୍ଷ୍ମୀ ମାଗୁଥିଲ
ଅଧିକାର ନାହିଁ, ମୋର ଅମର ବରରେ
ବିଷ୍ଣୁ ବିନା ତାହା କେହି ଦେଇ ନ ପାରଇ
ଅନ୍ୟବର ଯାହା ଇଚ୍ଛୁ ତଥାସ୍ତୁ ତୋହର

( ଅଦୃଷ୍ଟକୁମାରୀମାନଙ୍କର ପ୍ରବେଶ )

ଗୀତ—( ବଧିର ବଚନ ଲୀଳାଖେଳା ବୃତ୍ତେ )

ଦେଖ ୨ ହେ ବଙ୍କଜନେ ନୟନେ ।
ଯାକୁ ଧ୍ୟାନେ ନ ପାନ୍ତି ତ୍ରିପୁରଜନେ । ଧ୍ରୁବ ।

ଶତଦଳରୁ ଜାତ ଯେ କମଳିନୀ ବହୁଛନ୍ତି ନାମ ଦାରିଦ୍ର୍ୟ ଭଞ୍ଜିନୀ ।
ଦୁଃଖୀଙ୍କ ଦୁଃଖ ବିନାଶନ୍ତି ଚିନ୍ତନେ । ୧ ।
ଯେହୁ ହୋଇଣ ସିନ୍ଧୁରାଜ ଦୁଲଣୀ, ପୁଣି ବ୍ରହ୍ମାଣ୍ଡ ନାଥଙ୍କର ଘରଣୀ ।
ଛୁଅର ଗୃହସ୍ଥାଳୁଣି ପୂଜେ ତା ସଦନେ । ୨ ।
ତାର ପୂଜାରେ ତୋଷ ହୋଇ ଜନନୀ, ଯାଚି ଦିଅନ୍ତି ବର ଜ୍ଞାନଦାୟିନୀ ।
ବଳରାମ ତା ଆସି ଜାଣିଲେ ଧ୍ୟାନେ । ୩ ।
ହରିଙ୍କି ଭକ୍ଷିଲେ ଯାଇଁ ଗୃହ ଛିଦ୍ର, ଶୁଣି ଲକ୍ଷ୍ମୀଙ୍କୁ ତେଜିଲେ ସେ ସତ୍ୱର ।
ଧନ୍ୟ ବିଶ୍ୱଦୟାନିଧି ଭବେ ମନେ । ୪ । ( ପ୍ରସ୍ଥାନ )

--*:O:*--

## ଦ୍ୱିତୀୟ ଅଙ୍କ ।

### ପ୍ରଥମ ଦୃଶ୍ୟ ।

( ବଳରାମଙ୍କର ପ୍ରବେଶ )

ବଳରାମ—ଓ ହୋ ! ଆଜି କି ପାଁ ମେରୁପର ଲାଗଇ ମୁଷଳ

ଅଚଳ, ଶୈଳପରି ହୃଦୟ ମୋହର
ଅମଙ୍ଗଳ ଆଜ କି ହୋଇବ ମୋ ନବରେ
ଅକସ୍ମାତେ ଘଟୁଛି ଅବଧି
କମ୍ପାଇ ଆଶ୍ଚର୍ଯ୍ୟ ମୋ ଦର୍ଶନ
ଧ୍ୟାନକଲେ ଜଣା ହେବସର୍ବ ( ଧ୍ୟାନ )
ହୁଁ ଏବେ ଜାଣିଲି ?
ଆଜମୋର ସମ୍ମୁଖରେ ସାଗର ତନୟା
ପଡ଼ିଅଛି ଯିବ ଦେଖେ କାହିଁ
ଶୃଣ୍ଡାଳନବରେ ସେ ରହୁଛି ଦଣ୍ଡାଇଣ
ନଡପ୍ରଡ କର୍ରେ ଏହାପର
ବେନଭ୍ରାତେ ବିଚାର କରଇ
ଆଜନଷ୍ଟ ଛିଣ୍ଡିବ ଜଞ୍ଜାଳ
ଯାଏଁ ମୁହିଁ କହାଇଁ ଗୋଚରେ ।

( ଜଗନ୍ନାଥଙ୍କର ପ୍ରବେଶ )

ବଳରାମ—ଦେଖ ଜଗନ୍ନାଥ !
ପାପିଷ୍ଠି ସିନ୍ଧୁରାଜଜେମା
ଦଣ୍ଡାଇଛି ଶୃଣ୍ଡାଳ ନବରେ
ଅଶ୍ରୀଷ୍ଟଶ୍ରୀରେ କାର୍ଯ୍ୟ ଯେବେ ବରେ ତୋହର
ତେବେ ଦୂର ହୁଅରେ ଛଣ୍ଡୁଆ
ଶୃଣ୍ଡେଦାଣ୍ଡେ ଯାଅ ଦୂରହୋଇ
ଶୃଣ୍ଡାଳନବରେ ବେଗେ କରଯାଇ ବାସ
ଅଲକ୍ଷଣିପତ୍ନୀ ତୋର, ତୁହି ବେନଜଣେ
ବେଗେ ଦୂରହୁଅ ମୋ ନବରୁ

ଜଗନ୍ନାଥ—ଜେଷ୍ଠଭ୍ରାତ ! କୋପ ଶାନ୍ତକର,
ଦୋଷ ଯେବେ କରିଅଛି ସିନ୍ଧୁରାଜ ଜେମା ।

କ୍ଷମାକର ବାରେ ତାର ଦୋଷ,
ଆଜ ସ୍ୱର୍ଗପୁରକନେ ଆଣିବା ଡକାଇ,
ପବନ୍ଧ କରାଇ ନେବା ପୁରେ ।
ନ ଜାଣିଣ ଦୋଷ ଯେବେ କରିଛି କମଳା,
ଭ୍ରାତ ! ତବ ଧରୁଛି ପଦ୍ମର,
କ୍ଷମ ତାହା ମୋର ଦୋଷ ବୋଲି ।

ବଳରାମ—ଆରେ ଦୁଷ୍ଟ ! ପାପୀଷ୍ଠାକୁ ଯେବେ ଆଶା ତୋର,
ଦୂରହୁଅ ମୋର ସମ୍ମୁଖରୁ ।
ଚଣ୍ଡାଳ ସାହିରେ ବାଯ ସେହି ଚଣ୍ଡାଳୁଣୀ,
ଅପବିତ୍ର ହୋଇ ପଶି ନାଶେ ମୋ ନିବାସ,
ଚଣ୍ଡାଳବତ୍ସଳ ବେନି ଭ୍ରାତେ କରାଉଛି,
ନଯାଣୁ କି ତାହାରେ କହାଇ,
ଭର୍ଯ୍ୟାଙ୍କରର କାର୍ଯ୍ୟ ଯେବେ ଅଛଟର ତୋହର;
ନ ରହିଣ ଯାଅ ମୋ ନବରୁ,

ଗୀତ ।

ଭ୍ରାତ ! ଦୋଷ ହେଲା ତାର, ବାରେ ତାହା କ୍ଷମାକର ॥ ପଦ ॥
କହୁଅଛି କର ଯୋଡ଼, ବାରେ ତାକୁ ଦିଅ ଛାଡ଼
ଆଉ ଦୋଷ ହେଲେ ହେବ ଦୂର ॥୧॥
ନଜାଣି କରଛି ଦୋଷ ଶେଷ ତେଜ ଟୋଷେ କ୍ଷେଷ
(ତୋତେ) ଦସ୍ମାଲ୍ପ ଯୋଡ଼େ କର ॥ ୨ ॥

ଗୀତ — (ଶିଶୁମତି ନରଜାତି ବୃତ୍ତ)

ରେ ଅଧମ ସେ ଅଧର୍ମୀ ମତେ ଜାଣିନଥିଲା
ଜାଣୁ ୨ ଜନ୍ମୁଯାଇଁ ବରଣକଲୁ । ପଦ ।
ଚାଣ୍ଡାଳ ସାଇରେ ଯାଇ କିମ୍ପାଇଁ ଥିଲା ଦଣ୍ଡାଇ
କହିହ କି ତୋତେ ଭଣ୍ଡାଇ, ରେ ହେଣ୍ଡାବୁଲା ॥୧॥

ନତ କରେ ଏହିପରି          ନଜାଣୁ କି ତା ଶ୍ରୀହରି
ପାପେ ବେନଭାଇଙ୍କୁ ସେ ବୁଡ଼ାଇ ଦେଲା ॥ ୨ ॥
ବୋଲେ ଦୟାନିଧି ଧନ          ନଗୃହଁ ଭଣ୍ଡି ବଦନ
ଗୃଣ୍ଡେ ଦାଣ୍ଡେ କର ବନ୍ଦା ଯେ କାଣ୍ଡ କଲା ॥ ୩ ॥

ବଳରାମ—ଜଗନ୍ନାଥ ! ଯାଇ ବେଗେ ବସ ସିଂହଦ୍ୱାର
ଆସିଲେ ମନ୍ଦିରେ ଲକ୍ଷ୍ମୀ କର ତାକୁ ଦୂର    (ଯେ ଆଜ୍ଞା)
( ବଳରାମଙ୍କ ପ୍ରସ୍ଥାନ )

(ଲକ୍ଷ୍ମୀଙ୍କର ପ୍ରବେଶ)

ଲକ୍ଷ୍ମୀ—ପଥଶ୍ରାନ୍ତ ନାଥ ମୁହିଁ ଭିତରକୁ ଯିବି
ପାକବେଳ ହୋଇଅଛି ଉଚ୍ଛୁର
ଦ୍ୱାର ମାଡ଼ି ବସିଅଛ କହ କାହିଁ ପାଇଁ
ଆଡ଼ହୁଅ ଯିବି ଭିତରକୁ ।

ଜଗନ୍ନାଥ—ପ୍ରିୟେ ! କ୍ଷମା ପାଳିନୀ ହୋଇ କହ ଭିତରକୁ ଯିବ
ଗୃଣ୍ଡାଳସାଇରେ କମା ଦଣ୍ଡାଇଣ ଥିଲ
ଆମ୍ଭେ ଦେଖିନାହୁଁ, ଜ୍ୟେଷ୍ଠଭାଇ ଦେଖିଛନ୍ତି
ଆମ୍ଭେ ଦେଖିଥିଲେ ସିନା ଦିଅନ୍ତୁ ଲୁଗ୍ରାଇ
ଅନ୍ୟଥା ନ କରିପାରେ ଜ୍ୟେଷ୍ଠଭ୍ରାତ ବାଣୀ
ଯେଉଁ ଭିଷ ଭାଷିଛନ୍ତି ତାହା କିଏ ସହିପାରେ ?
ଯାଅ ଲକ୍ଷ୍ମୀ, ଆଉ ତୁମ୍ଭଠାରେ କାର୍ଯ୍ୟନାହିଁ
ଶିରୋଧାର୍ଯ୍ୟ ଜ୍ୟେଷ୍ଠଭ୍ରାତ ବାକ୍ୟ ଅଟେ ମୋର ।

ଲକ୍ଷ୍ମୀ–ଗୃଣ୍ଡାଳୁଣୀ ବୋଲି ମୋତେ ବୋଲ ଜଗନ୍ନାଥ
ତୁମ୍ଭେ କେଉଁ ଅଟ ଶ୍ରେଷ୍ଠ ଜାତି
ଗଜଉ ବାଜଉ ପର ଚନେ ଗୋଲୁ ଚରି
ଭକ୍ଷିଅଛ ବିଦୁର ଗୃହରେ
ଏପରି ଯେତେକ କର୍ମ ଅଛଇଁ ତୁମ୍ଭର

ତାହାଙ୍କ ନପଢ଼େ ତୁମ୍ଭମାନେ
ଚଣ୍ଡାଳୁଣୀ ପୁଣି ବୋଲି ମୋତେ ( ଗୀତ )

ଜଗନ୍ନାଥ — ( ତୁହ୍ନ ) କମଳାରେ ବଳାଇ କହୁଛୁ କେତେ ।
ଜଳ ଜଳା ପଳା ଆଗୁ ନବଳା ମତେ ॥ ପଦ ॥
ମନ ଭୁଲାଇବା ଆସେ, ରଚ୍ଛି କଥା କହୁ ପାଶେ ॥
ଗଲ୍ପ କଥା କାହୁଁ ଆସେ, ଭାବବୁ ଯେତେ ॥ ୧ ॥
ବୋଲେ ଦୟାନିଧି ଦୂର, ହୋଇଣ ଯାଅ ସତ୍ୱର
ଚଞ୍ଚଳ ଯା ଜଞ୍ଜାଳ ତୁ ନକର ମତେ ॥ ୨ ।

ଲକ୍ଷ୍ମୀ—ପ୍ରଭୁ ! ଶୁଣିବା ହେଉନ୍ତୁ ଦାସୀ ବୋଲେ ଯେ ଉତ୍ତର

ଜଗନ୍ନାଥ — ବୋଲିଯାହା ବୋଲିବ ସତ୍ୱର

ଗୀତ — (ନକହ ନନ୍ଦନନ୍ଦନ ବୃତ୍ତେ)

ନ ଭାଷ ଏମନ୍ତ ଭାଷ ହେ ପୀତବାସ
ବିନା ଦୋଷେ ରୋଷ କିମ୍ପା ହୁଅନ୍ତ ଈଶ ॥ ପଦ ॥
ଚଣ୍ଡାଳୁଣୀ ବୋଲି ଗାଳି ଦିଅ ପ୍ରଭୁ ବନମାଳି
ସତ୍ୟକଥାକୁ ହେ ଭଲ କେମନ୍ତ ଦୋଷ ।୧।
ବିଭାକାଳେ ପ୍ରାଣନାହା ପିତା ମୋ କହଇ ଯାହା
ସେ କଥା ଭୁଲୁଛ ଯାହା ହେ ହୃଷିକେଶ ।୨।
ପୁଣି ଯୁଆଖେଳେ ହରି ହାରିସତ୍ୟ ଥିଲ କରି
ଯାହା ମାଗିବୁ ସୁନ୍ଦରୀ ତୁହ୍ନ ଅବଶ୍ୟ ।୩।
ବୋଲେ ଦୟାନିଧି ଦେବ ସତ୍ୟରେ ଅସତ୍ୟ ହେବ
ସତ୍ୟକୁ ଲଙ୍ଘିଲେ ସର୍ବ ହେବ ହେ ନାଶ ।୪।

ଜଗନ୍ନାଥ—କିମ୍ପାଇ କମଳା ଆଉ କହୁଛୁ ବଳାଇ
କିଛିଦୂରେ ରହ କହୁ ତୋତେ
ଭ୍ରାତଙ୍କୁ ବୁଝାଇପରେ ଆଣିବୁ ନିଶ୍ଚୟ
ନିତ ତୋତେ ଦେଉଥିବୁ ପଙ୍କ୍ତି

ଅଂଚଳ୍ପାରେ ରହ ଦୂରହୋଇ

ଲକ୍ଷ୍ମୀ—ପ୍ରାଣେଶ ! ଏ ଅଧିନୀର ନିବେଦନ ନଶୁଣି ପୁନଶ୍ଚ ଏ ଅନ୍ତ୍ୟର ବଚନ ଭସିଲ ?

(ଗୀତ) ନାଥ ଏକି ଅବଗୁର (ତୁମ୍ଭେ) ଅନାଥ ନାଥ ଯୋଦର ।।ପଦ।।

ସୂକ୍ଷ୍ମା ଦେଇ ପିତା   ଯାଇଛ ଶରଣ

ସେକଥା ମନେ କି ନାହିଁ ନାରାୟଣ

କରିଥିବା ସତ୍ୟ ହୁଏ ଅକାରଣ,   ପ୍ରଭୁ ଦେବ ଦେବ ତୋର ।।୧।।

ଦଶ ଦୋଷ ପରା କ୍ଷେମିବ ହେ ଈଶ

କିବା ଦୋଷେ ରୋଷ ହୁଅ ପୀତବାସ

ଏବେ କିମ୍ପା ପ୍ରଭୁ କରୁଛ ନିରାଶ (ମୋତେ) ଯାଅ ବୋଲ ବାରମ୍ବାର

ଗୁଣ୍ଡିଚାଲୁଣୀ ବାଦେ ଦେବ ଯଦୁସାଇଁ

ଯାଅବୋଲ ଶ୍ରୀମୁଖରେ ଦିଅ କହି

(ମୁହିଁ) ହେଉଛି ଅନ୍ତ୍ୟର ଅଲକ୍ଷଣୀ ହୋଇ ଦୟାନିଧି ଯୋଡ଼େକର ।୩।

ଜଗନ୍ନାଥ—କମଳିନୀ ! ତୁମ୍ଭେ ଆଜ ମତେ ଯିବା ରହିବାର କଥା ପ୍ରଶ୍ନକରନାହିଁ କାରଣ ! ଏ କୋମଳହୃଦୟ କି କଠିନ ଉତ୍ତର ଦେଇପାରେ ? ତାହା କଣ ତୁମ୍ଭେ ଯାଣନାହିଁ ? କେବଳ ଭ୍ରାତଙ୍କ ସକାଶେ ନିରୁତ୍ତର ?

ଗୀତ

ଯାହାଇଛା କମଳାରେ, ଯାଆବୋଲି ନ କହିବୁ ।

ଯାଅବୋଲି ଦେଲେକହି ଆଜକ ମୁଖରୁ ହିଁବୁ । ପଦ ।

ବୋଲେ ଦୟାନିଧି ଦୀନ, ଶୋକ ଚିନ୍ତା ତେଜଧନ

ରହସହ କିଛିଦିନ, ଭ୍ରାତଙ୍କୁ କହି ଆଣିବୁ । ୧ ।

ଲକ୍ଷ୍ମୀ—ପ୍ରାଣେଶ ! ମୋର ପଡ଼ନେବାର କୌଣସି ଦରକାର ନାହିଁ ମୋର ଅନ୍ତ୍ୟତେହାଇ ରହିବାରି ଆବଶ୍ୟକ ନାହିଁ, ମୁଁ ଆପଣଙ୍କ ମନ୍ଦିରକୁ ଯିବାକୁ ଇଚ୍ଛାକରୁନାହିଁ କେବଳ ମାନବଦାୟପ୍ରାର୍ଥନା,

ମୋର ଏକାନ୍ତ ବାଞ୍ଛାମାତ୍ର ହେ ଦୀନବନ୍ଧୁ ! ଏଦାସୀକୁ ଶ୍ରୀ
ଚରଣରୁ ବିଦାୟ ଦିଅନ୍ତୁ ।

ଗୀତ

ଆହା ପ୍ରଭୁ ଜଗନ୍ନାଥ ହେଲକି ନିଷ୍ଠୁର ଚିତ୍ତ
ଭ୍ରାତବୋଲେ ହୋଇଲ ନିଷ୍ଠୁର ହେ ॥
ପଚାରିଲ ନାହିଁ ମୋତେ, ବିଚାରିଲ ନାହିଁ ଚିତ୍ତେ
ଉଚ୍ଚାରିଲ ଏମନ୍ତ ଉତ୍ତର ହେ । ପଦ
ଅଯତ୍ୟ ହେଲ ଗୋସାଇଁ ; ପତ୍ରରେ ମୋ କାର୍ଯ୍ୟ ନାହିଁ
ଚଣ୍ଡାଳୁଣୀ ବୋଲି କର ଦୂର ହେ ॥
ଅଲକ୍ଷଣି ଚଣ୍ଡାଳୁଣୀ ହୋଇଯାଏ ଚକ୍ରପାଣି
ପଛେ ମତେ କରିବ ମଜର ହେ । ୨ ।
ଏବେ ଶାପ ଦେନ ମୋର, ତୁମ୍ଭେ ବେନି ସହୋଦର
ଅନ୍ନ ନମିଳବ ବାରବର୍ଷର
ଯେବେ ଚନ୍ଦ୍ର ସୂର୍ଯ୍ୟ ଉଦ୍ୟ, ହେଉଥିବେ ଅତଯାତ
ମୋର ଅଭିଶାପ ହେଉ ସତ୍ଵର । ୩ ।
ମୁହିଁ ଚଣ୍ଡାଳୁଣୀ ଯେବେ, ହେକ ଦେବ ଅନ୍ନ ତେବେ,
ଭୋଜନ କରିବ ବେନି ସୋଦର,
ଏବେ ତୁମ୍ଭ ଅଳଙ୍କାର ; ନିଅ ପ୍ରଭୁ ଚକ୍ରଧର,
ଅପବାଦ ନ ହୋଇବ ପଛର
ଆହା ! ଯାହା ପ୍ରାଣନାଥ, ଏହା କଲ ହେଲ ଚିତ୍ତ,
ମୋ ସ୍ତୁତିକି ନଶୁଣିଲ କର୍ଣ୍ଣର ॥
ଏବେ ଏବିନତି ମୋର, ଯାଅ ବୋଲି ଶ୍ରୀମୁଖରେ,
ବୋଲେ ଦୟାନିଧି କୋଟି ଜନ୍ମ ହାର । ୪ ।

ଲକ୍ଷ୍ମୀ—ପ୍ରଭୁ ! ଶ୍ରୀଚରଣ ଦାସୀ ଏବେ ହେଉଛି ବିଦାୟ, ସୁଖେ ବାସେ
ଥାଅ ବେନି ଭ୍ରାତେ ? ( ପ୍ରଣାମ ଓ ପ୍ରସ୍ଥାନ ) ( ମଳେ ୨ ଭାବ )

ମୁଁ ଏବେ କେଉଁଆଡ଼କୁ ଯିବି, କଅଣ କରିବି, ହାୟ ବିଧାତା ମୋର କର୍ମରେ ଏହାକ ଲେଖିଥିଲୁ, ସିନ୍ଧୁରାଜର ସୁତାହୋଇ, ବ୍ରହ୍ମାଣ୍ଡ ନାଥଙ୍କର ବନିତାହୋଇ ମୋର ପୁଣି ଏଦଶା, ହାଇ ଯାହାତହେବାତ ହୋଇଗଲାଣି, ଏଣିକ ଯାହା କର୍ମରେଥିବ ତାହା ଭୋଗକରିବ ଯାଏଁ ଏବେ ! ଏହି ପଥରେ—

( ଦାସୀମାନଙ୍କର ପ୍ରବେଶ )

ଦାସୀ—ମାତ ଜଗତଜନନୀ ! ଆମ୍ଭମାନଙ୍କୁ ଛାଡ଼ି କୁଆଡେ ଚାଲି ଯାଉଅଛ ? ଆମ୍ଭେମାନେ କି ଚରଣକମଳରେ ଦୋଷ କରିଅଛୁ ? ମାତଃ ! ଆମ୍ଭେମାନେ ତୁମ୍ଭଙ୍କୁ ଛାଡ଼ି କୁଆଡେଯିବୁ

ଲକ୍ଷ୍ମୀ—ଦାସୀମାନେ! ମୁଁତ ଅଲକ୍ଷଣୀ ଗୃହଶ୍ରାନ୍ତୁଣୀହୋଇ ଦେଶାନ୍ତର ହେଉଅଛି, ତୁମ୍ଭେମାନେ ମୋରସଙ୍ଗରେ କାହିଁକି ଗୋଡାଇଆସୁଅଛ, ତୁମ୍ଭେମାନେ ଯାଇ ପ୍ରଭୁଙ୍କ ନିକଟରେ ସେବାକରି ରହିବ ? ମୋହର କର୍ମରେ ଯାହାଥିବ ମୁଁ ଭୋଗକରିବ ତୁମ୍ଭେମାନେ ମୋହର ସଙ୍ଗରେ କାହିଁକି ଭ୍ରମି କଷ୍ଟ ପାଇବ ଯାଅ ଫେରି ଯାଅ ।

[ଦାସୀମାନେ ଲକ୍ଷ୍ମୀଙ୍କ ପ୍ରତି]

(ଗୀତ) କହ ଜଗତ ଜନନୀ ଗୋ, କେଉଁ ଦୋଷେ ତେଜ ଠାକୁରାଣୀ ॥ପଦ॥

ସେବି ତୋ ପଦ୍ମର ଥିବୁ ସଙ୍ଗତରେ ସଙ୍ଗେ ହୋଇ ତୋ ସଙ୍ଗିନ
ଦୟାନିଧି ଧ୍ୟାନ, ନଶୁଣି ବଚନ, ନଭାଷ ଏହି ଦୟିନୀ ॥୧॥

ଲକ୍ଷ୍ମୀ—ଦାସୀମାନେ ତୁମ୍ଭେ ମୋର କଥା ମାନୁନାହିଁ କାହିଁକି, ମୁଁ ଏତେ କହୁଛି ତୁମ୍ଭେମାନେ ପୁନରାଏ ଆସୁଅଛ ।

[ଦାସୀମାନଙ୍କ ପ୍ରତି ଲକ୍ଷ୍ମୀଙ୍କର ଗୀତ]

କିମ୍ପା ଦାସୀମାନେ ନରହି ସଦନେ
ଆସ ଏ ଗୃହଶ୍ରାନ୍ତୀ ସଙ୍ଗରେ

ଅଲକ୍ଷଣୀ ହୋଇ      ଯାଉଅଛ ମୁହିଁ

ଦେଖ ଦାସୀଗୋ ଦେଶାନ୍ତରେ ॥ପଦ॥

ପ୍ରାଣେଶ ଆଶାନାହିଁ      କାହିଁ ଯିବ ମୁହିଁ

କିମ୍ବା ଗୋଡାଇଛ ସଙ୍ଗରେ

ଦଣ୍ଡାନାଥ ଭାବେଷ      ଯାଅ ପ୍ରଭୁ ପାଶେ

ସେବ ରହିଥାଅ ତୋଷରେ ॥୧॥

ଦାସୀ—କଣ କହୁଛ ଜନନୀ ? ଏପରି କଥା ଆଉ କହନାହିଁ

ତୁମ୍ଭଙ୍କୁ ଛାଡ଼ି ଆମ୍ଭେମାନେ କେଉଁଅଡେ ଯିବୁ

ଜଳ ତେଜି ମୀନ କାହିଁ ବଞ୍ଚିଛି ଜନନୀ

ଅବଶ୍ୟର କଥା କିମ୍ବା କହ କମଳିନୀ

ଲକ୍ଷ୍ମୀ—ହଉ ତେବେ ଆସ,ଏତେ କହିଲ ମୋର କଥା ମାନିଲି

ନାହିଁ ମୋର ଯେଉଁ ଦଶା ତୁମ୍ଭର ମଧ୍ୟ ସେହି ଦଶା

[ ପ୍ରସ୍ଥାନ ]

୨ୟ ଅଙ୍କ- ୨ୟ ଦୃଶ୍ୟ ।

( ଦୁଇଜଣ ସ୍ତ୍ରୀ ପୁରୁଷଙ୍କ ପ୍ରବେଶ )

ସ୍ତ୍ରୀ—ଚୂଲିପଶା ଟା ମରୁ ନାହିଁ, କାଲଯାକ ମୋର ସଙ୍ଗେ ବାଇ
ଦନେ ଅଧେ ଯେବେ ବାପଘର ଗଲି, କାଟିଦିଏ ଗାଲି
ମାଡ଼ଦେଇ

ପୁ—ନବନଖାନା ନେ ଯାଉକାହିଁ ; ମାର ତୋତେ ଖୋଜେ ସାଇ ?
ସେ ମୋଦୋଷ ସହ, ଆସ ଗୃହମୁହିଁ କାନ୍ଦ ନା ଆଉ ମାରିବ
ନାହିଁ ॥୧॥

ସ୍ତ୍ରୀ—ଯାଅରେ ଅପରା ଲଜନାହିଁ. ପଛେ୨ ଆସୁଛୁ ଗୋଡାଇ
ତୋରସଙ୍ଗେ ମୁହିଁ, ଆଉ ଯିବ ନାହିଁ, ଯହିଁ ଇଚ୍ଛା ତହିଁ ଯିବି
ମୁହିଁ ॥୨॥

ପୁ—ପାଞ୍ଚ ଯେବେ ସଞ୍ଚ ନହେବୁ ମତେ; ମାର ଗୃପୁଡେ ଯେନି ଯିବ

ସତେ କହୁଛି ତୋତେ, ଚଳ ଭୁଲିଲେ, ନାଗରୀ ଠିକଣା
ରଖିବିନାହିଁ ॥୩॥

ସ୍ତ୍ରୀ—ଗାତପଣାଟା ତୋ ଏତେତଗୁଡ଼ା, ତୁ ମାଇଲେ କେମାନେ
ଆସେ ନା ମାଡ଼, ଏକା ଖୁଦାକେ ଯମର ଲେକେ ଭେଟି
କରାଇ ତୋତେ ଦେବଇଁ ॥୪॥

ପୁ—କହିଲ ବୋଲ କି ମାଇଲ ତୋତେ, ନମାର ଏମନ୍ତ ମାଡ଼ି ତୁ
ମତେ, ଦୟାନିଧି କହ ଆସଆସ ସହ ଯିବାରେ ସଦନେ ସଙ୍ଗି
ହୋଇ ॥୫॥

ସ୍ତ୍ରୀ—ମୋ କାନ୍ଧରେ କମା ଦେଲୁ ହାତ

ପୁ—ସଙ୍ଗ ହୋଇପର ଯିବା ସଂଗାତ

ସ୍ତ୍ରୀ—ଏତେ ଥୋବରା ତୁ ନିଲଠା ମୁହାଁ

ପୁ—ତୁ ମୋର ପ୍ରଥମ ବଭ କନିଆଁ

ସ୍ତ୍ରୀ—ଯାରେ ଅପର ନକହ କଛି

ପୁ—ଦୋଷ ଖେମିଅସ ତୋପାଦେ ପଡ଼ୁଛି

ସ୍ତ୍ରୀ—ଛିଛି ତୋରମୁଖେ ଲାଜନାହିଁକି

ପୁ—ତୁମେ ଜୀବଧନ ଗୃହମୁହିଁକି

ସ୍ତ୍ରୀ—ମୁହିଁ ଯାଉଛି ମୋପିତାର ଘର

ପୁ—ତୁହଗଲେ ମୁହିଁ ଯିବ ସଙ୍ଗର ( ଉଭୟଙ୍କର ପ୍ରସ୍ଥାନ )

( ଅଦୃଷ୍ଟକୁମାରୀଙ୍କର ପ୍ରବେଶ ଓ ଗାନ )

( ଦେଖ ୨ ଆହା ପ୍ରକୃତସୁନ୍ଦରୀ ବୃତ୍ତେ )

ଦେଖ ୨ ସହ ନୟନପୁରାଇ ଶୁଣ ୨ ଶ୍ରୁତିପଥରେ ।
ଲକ୍ଷ୍ମୀଲୀଳାନାଟ୍ୟ ଅମୃତଲହର କଲୁଷ ପଳାଇବଦୂରେ । ପଦ ।
ଜଗନ୍ନାଥ ପାଶୁ ଜଗତମାତ, ବଦାହୋଇ ଦୁଃଖେ ଗମନ୍ତ ପଥ,
ହୃଦୟମଧ୍ୟର, ଚିନ୍ତନ୍ତେସତ୍ୱରେ, ଜାଣିଲା ବିଶ୍ୱକର୍ମାପୁରେ । ୧ ।

[ପ୍ରସ୍ଥାନ]

ଅନ୍ୟ ବେତାଳ—ହଁ ଭାଇ ! ଯାହା ବୋଲ ଅଟେ ସତ୍ୟ ବାଣୀ ।
ଧ୍ୟାନ କର ସବେ ଜଣାଯିବ ଯେ ଚିନ୍ତାଇ ( ସମସ୍ତଙ୍କର ଧ୍ୟାନ )
ବେତା—ଓ ହୋ ! ଚଣ୍ଡାଳୁଣୀ ବାଦେ ପ୍ରଭୁ ଜଗତ ମାତ ଲକ୍ଷ୍ମୀ-ଦେବୀଙ୍କୁ ଦୂର କରନ୍ତେ ମାତ ଆମ୍ଭମାନଙ୍କୁ ଚିନ୍ତା କରୁ ଅଛନ୍ତି । ଶୀଘ୍ର ଚାଲ ମାତାଙ୍କ ନିକଟକୁ ଯିବା । ନଗଲେ ମା ଯଦି ରାଗନ୍ତି ଭସ୍ମ କରିଦେବେ, ଏକା ଥରକେ ସମସ୍ତେ ମରିବା । ଶୀଘ୍ର ଚାଲ ସମସ୍ତେ ଯିବା ।
ଅନ୍ୟ ବେତା—ହଁ, ଭାଇ ଶୀଘ୍ର ସମସ୍ତେ ଚାଲ ମାତାଙ୍କ ନିକଟକୁ ଯିବା                                         ( ପ୍ରସ୍ଥାନ )

୬ଷ୍ଠ ଅଙ୍କ — ଅନ୍ୟ ଦୃଶ୍ୟ

( ଲକ୍ଷ୍ମୀଙ୍କ ନିକଟରେ ବେତାଳମାନଙ୍କ ପ୍ରବେଶ ଓ ପ୍ରଣାମ )

ବେତା—ମାତ ! ଏ ଅଧମସୁତ ଚଞ୍ଚଳ କିମ୍ପାଇ
ସ୍ମରଣରେ କରନ୍ତୁ ପ୍ରକାଶ
କି କାର୍ଯ୍ୟ କରିବୁ, ଶୀଘ୍ର ବୋଲନ୍ତୁ ଜନନୀ
ତୋଷେ ଅବିଳମ୍ବେ ଆଜ୍ଞା ଦିଅ ?
ଲକ୍ଷ୍ମୀ—ଶୁଣ ୨ ବେତାଳରେ ମୋହର ଉତ୍ତର
ଚାଣ୍ଡାଳୁଣୀ ବାଦେ ପ୍ରଭୁ ଦୂର କଲେ ମତେ
ଚିନ୍ତନ୍ତେ ବନ୍ଦରମା ଏପୁର ନିର୍ମାଣିଲି
ଆଉ ଏକ କାର୍ଯ୍ୟ ଅଛି, ମୋର
ଚିର ଉପକାର ବୋଲି ମାନିବି ତା କଲେ
ବେଗ ହୋଇ                    ମୁଁ ବଡ ଦେଉଳକୁ
ଭାଉନ କୋଠ ଭଣ୍ଡାର ଶୀଘ୍ର ଆଣ ବହି
କୁଠାରୁ କାଞ୍ଚନ ଯାଏ; ନରଖି ସେଠାରେ
ଯାଅ ବେଗେ, ବିଳମ୍ବ ନକର
ବେତା—ଯେ ଆଜ୍ଞା ହୋଇଲା ମାତ, ଯାଉଅଛୁ ସବେ
( ପ୍ରଣାମ କରି ସମସ୍ତଙ୍କର ପ୍ରସ୍ଥାନ )

ବେତା— ( କିଛି ପଥ ଗମନ କରେ )

ଚାଲ ୨ ଭାଇମାନେ ଫେରି ଯିବା ଆମ୍ଭେ
ଯେଉଁ ଠାରେ ରହିଛନ୍ତି ହରି ବଳରାମ
ସେଠାବରୁ କେହ୍ନେ ବସ୍ତୁ ଆଣିବା ହେ ବନ୍ଧୁ
ସାକ୍ଷାତେ ପଡ଼ିଲେ ପ୍ରାଣ ନପାଇବା ଆଉ

ଅନ୍ୟ ବେତା—ହଁ ଭାଇ ମୁହିଁ ମଧ୍ୟ ଭାବିଥିଲି ତାହା
ଚାଲ ୨ ମାତାଙ୍କ ନିକଟେ ଯିବା ଫେରି

( ଲକ୍ଷ୍ମୀଙ୍କ ନିକଟେ ବେତାଳମାନଙ୍କର ପ୍ରବେଶ )

ବେତା—ମାତ, ଯେଉଁ ଠାରେ ଶୋଇଛନ୍ତି ଦେବ ଜଗନ୍ନାଥ
ଆବର ଅଛନ୍ତି ଭାଇ ବଳରାମ ଶୋଇ
ଅମ୍ଭଙ୍କୁ ଦେଖିଲେ କାଳେ ଦଣ୍ଡ ଦେବେ ପ୍ରଭୁ
କି ଉପାୟେ ଆଣିବୁ ମା ବସ୍ତୁ ?

ଲକ୍ଷ୍ମୀ—ହେଉ ତେବେ କ୍ଷଣମାତ୍ର ବସ ଏହିଠାରେ
ନିଦ୍ରା ଦେବୀ ଗଇ ମୁଁହିଁ ପଠାଏ ସେଠାକୁ

( ନିଦ୍ରା ଦେବୀଙ୍କୁ ଚିନ୍ତା ଓ ନିଦ୍ରା ଦେବୀଙ୍କର ପ୍ରବେଶ )

ନିଦ୍ରାଦେବୀ — କହ ମାତ, ଚିନ୍ତିଲ କିମ୍ପାଇଁ
କି କାର୍ଯ୍ୟ କରିବି ଶୀଘ୍ର, ଆଜ୍ଞା ହେଉ ମତେ

ଲକ୍ଷ୍ମୀ — ଉପକାର କର ନିଦ୍ରା ଦେବୀ, ଯାଇଁ ରାମ କୃଷ୍ଣଙ୍କ ନୟନେ,
ଆଜ ଦିନ କାଲି ଦିବା ଦୁଇ ଦଡଯାଏ
ନିଦ୍ରା ନଛାଡ଼ିବ ଆମ୍ଭ ବୋଲେ

ନିଦ୍ରାଦେବୀ — ଯେ ଆଜ୍ଞା ହୋଇଲା ଏବେ ଯାଉଅଛି ମୁହିଁ

( ପ୍ରଣାମ କରି ପ୍ରସ୍ଥାନ )

ଲକ୍ଷ୍ମୀ — ଯାଅରେ ବେତାଳେ ବେଗେ ବିଳମ୍ବ ନକରି
ଗଲେଣିରେ ନିଦ୍ରା ଦେବୀ ତହିଁ

ବେତା — ହଉ ମାତ ଯାଉଅଛୁ ଆମ୍ଭେ ( ପ୍ରଣାମ କରି ପ୍ରସ୍ଥାନ )

ଅନ୍ୟବେତାଳ – ହଁ ଭାଇ ଧଅ ନେଇ ବେଗେ ?

ଗୀତ – ବେଗେ, ଭେଣ୍ଡା ଭାଇରେ, ଧର ୨ ଏହି ଭଣ୍ଡାଙ୍କୁ ।।

ପଣ୍ଡା ବେହନ୍ତୁ ଗଡାଇ ଦେଇ ମୁଣ୍ଡାଇ ନେବା ଖଣ୍ଟକୁ ।। ପଦ ।।

କେତେ ଦୁଃଖ ଏହି ଦେଇଛନ୍ତି ଭାଇ ଆମ୍ଭ କମଳା ମାତାଙ୍କୁ ।

ନକର ମଠାଳ, ଧରରେ ଚଞ୍ଚଳ, ଗୃଣ୍ଡାଳ ଗୋପାଳ ବାଳାଙ୍କୁ । ୧ ।

ଅଣ୍ଡା ହେବେ ହୁଣ୍ଡା, ନମିଳଲେ ଗୁଣ୍ଡା ଭଣ୍ଡ ଏ ବକିବେ ମୁଣ୍ଡକୁ ।

ହେଣ୍ଡା ୨ ହୋଇ; ଦାଣ୍ଡରେତ ଏହି ଗୃଣ୍ଡଳ ଲଭିବେ ଦଣ୍ଡକୁ ।। ୨ ।।

ବଡ଼ ୨ ବୋଲ; ହସି ପଡେ ଖାଲ; ଛାଡ଼ିଯିବ ନାଲକାଲକୁ ।

ଦର୍ଡ଼ିଆ ଖଟେ ହୁଣ୍ଡାକୁ ଶୁଆଇ ଛଣ୍ଡାକନା ଦିଅ ହେଣ୍ଡାକୁ ।୩।

ଏବେ ଗଡ ପଡ ସୁଖେ ହୁଅ ମୁଚ; ନଡ ହେଲେ ଧଡ ତଳକୁ ।।

ଦହାନଧି ବୋଲେ ଚଞ୍ଚଳ ଗୃଆଲେ, ଗୃହିଁବେ ମାତା ଆମ୍ଭଙ୍କୁ । ୪ ।

ବେତାଳ – ଗୃଲ ୨ ଭାଇମାନେ ଏଖଟକୁ ମୁଣ୍ଡାଇ ମାତାଙ୍କ ନିକଟକୁ ଯିବା

ଅନ୍ୟବେତାଳ – ହଁ ଭାଇ ଗୃଲ ବେଗେ ଯିବା ମାତାଙ୍କର ପାଶେ

( ବେତାଳ ମାନେ ଭା ର କାନ୍ଧେ ହୁଁ କୁଦାବୋଲେ । ବୋଲ ଲକ୍ଷ୍ମୀଙ୍କ ନିକଟେ ପ୍ରବେଶ ଓ ପ୍ରଣାମ )

୩ୟ ଅଙ୍କ – ୧ମ ଦୃଶ୍ୟ ।

ବେତାଳେ – ଜୟ ଚଣ୍ଡି ଜଗତ ଜନନୀ
ଆଣିଅଛୁ ରନ୍ଧ ଖଟ ପାଟ ପିତାମ୍ବରୀ

ଲକ୍ଷ୍ମୀ – ଧନ୍ୟ ଧନ୍ୟ ବେତାଳେ ହେ କଲ ଯାହା ଅଜ,
ତୋଷ ହେଲି ତୁମ୍ଭର କାର୍ଯ୍ୟରେ ।
ଏବେ ତୋଷେ ଯାଅ ତୁମ୍ଭେ ବୈକୁଣ୍ଠ ପୁରକୁ,
ସୁଖେ ରହି ଥାଅ ସଦାକାଳେ ।

ବେତାଳେ – ଯେ ଆଜ୍ଞା [ ପ୍ରଣାମ କରି ପ୍ରସ୍ଥାନ ]

***

୩ୟ ଅଙ୍କ — ୨ୟ ଦୃଶ୍ୟ ।

( ଅଦୃଷ୍ଟକୁମାନଙ୍କର ପ୍ରବେଶ ଓ ଗୀତ )

ମନ ମନ୍ଦରେ ଦେଖ ଆଳ ମା-ବୃନ୍ଦେ ।

ଶୁଣ ସୁଜନେ ତୋଷ ମନେ ଲକ୍ଷ୍ମୀ ଲୀଳା,
ଏ ପରେ ଯାହା ରଚଲେ ଯଶୋଦା ବଳା । ପଦ ।
କାଲ ନଦ୍ରାରେ ବେନ ଭାଇ ଶୋଇଥିଲେ,
ଢବା ହୁଇ ଘଡକରେ ଚେତ ଉଠିଲେ ।
ଧାନ ଦମ୍ଭାନଧ ଚନ୍ଦ୍ର, ଶ୍ରୀକୃଷ୍ଣ ଗୃହେଁ ବୋଲନ୍ତୁ,
ରେହ୍ମଣୀ ବଳା । ୧ । ( ପ୍ରସ୍ଥାନ )

୪ର୍ଥ ଅଙ୍କ — ୧ମ ଦୃଶ୍ୟ ।

( ବଳରାମଙ୍କର ନଦ୍ରାଭଙ୍ଗ )

ବଳରାମ — ଓ ହୋ ! କ ଅଦ୍ଭୁତ କଥା । ଆଜ କେତେବେଳ ଯାଏଁ
ଶୋଇ ପଡ଼ଲୁ ? ଆଜିତ କାହିଁକ କାହାର ତୁଣ୍ଡ ଶୁଭୁନାହିଁ,
ଉଠରେ କହ୍ନାଇ କେତେ ନିଦ୍ରା ଯାଉ ତୁହ । ଦେଖ ଉଠି
ଏ କ ଆଚମ୍ବିତ ? ପରବାରିବର୍ଗ ଗଲେ କାହିଁ ?
ଆବର ପସ୍ତ୍ରାମାନଙ୍କ ନ ଶୁଭଇ ତୁଣ୍ଡ,
ଶୂନ୍ୟପୁରୀ ପର ମତେ ଲାଗଇ ଏ ପୁରୀ ।
ନ ମିଳଇ ଜଳ ପୁଣି ମୁଖ ପ୍ରଖାଳନେ ?
କହ ଜଗନ୍ନାଥ ! ( ଉଠିକରି ) ମତେ ଏଥିର କାରଣ ?

( ଜଗନ୍ନାଥଙ୍କ ନଦ୍ରାଭଙ୍ଗ )

ଜଗନ୍ନାଥ — ଆଜ କେତେବେଳ ହେଲାଣି, ଏ କ ଆଶ୍ଚର୍ଯ୍ୟ କଥା !
ଆଜତ କାହିଁକ କଛି ଗୋଳମାଳ ନାହିଁ ?
ନଯୋଗୀମାନେତ ଜଣେ ନାହାନ୍ତି କେ ଏଥି,
ଭ୍ରାତଃ ! ଲକ୍ଷ୍ମୀ ବହୀନେ ଏ ପୁରୀ ଦଶେ ହତଶିରୀ ।
ଲକ୍ଷ୍ମୀ ଗଲାରୁ ଏ ସବୁ ହୋଇଛି ଅବଧି,

ଏକା ଲକ୍ଷ୍ମୀବିନେ ଏ ସମସ୍ତ,
କେ କେଉଁଣେ ପଳାଇ ଗଲେ ସର୍ବେ ?
ବଳରାମ – ଜଗନ୍ନାଥ ! ପାଗଳ ପରାଏ ତୁହି କହୁଅଛୁ ମତେ,
ଯାର ପତ୍ନୀ ରୁଷି ହଜିଯାଏ,
ତାର ସ୍ୱାମୀ ନ ଖାଏ କି ରନ୍ଧ,
ଏମନ୍ତ ନ କହ ମୋତେ ଭୁଲ;
ଚାଲ ଏବେ ଭଣ୍ଡାରେ ସତ୍ୱର ।
ଜଗନ୍ନାଥ – ଯେ ଆଜ୍ଞା । ( ଭଣ୍ଡାର ଘରେ ପ୍ରବେଶ । )
ବଳରାମ – ଓ ହୋ, ଭଣ୍ଡାର ଯାକତ କଣ ସବୁ ଖୋଲା ପଡଛି ?
କେ ଘେନି ଗଲା ଭଣ୍ଡାରୁ ସମସ୍ତ ବସ୍ତୁକୁ,
ଜଗନ୍ନାଥ ! ଏ କି ଅଟେ ଅଦ୍‌ଭୁତ କଥା !
ଗୀତ – କହନ୍ତେ ଅକ୍ରୂର ବୁଢେ ।
କହ ଜଗନ୍ନାଥ ସବେ ବସ୍ତୁ କେଉଁଣେ ଗଲାରେ,
ବାଉନକୋଠି ଭଣ୍ଡାର କିଏ ବହି ନେଲାରେ । ପଦ ।
ଲକ୍ଷେ କୋଠୀ ଜୀବଯାରେ, ଭରି ବୋହିଲେ ନ ସରେ,
କ୍ଷଣକ ଭିତରେ ତାହା କିଏ ଘେନି ଗଲାରେ । ୧ ।
କହେ ଦୟାନିଧି ଧାନ, ରୋଷାଇଶାଳେ ଗମନ,
କର ବେଗେ ଜନାର୍ଦ୍ଦନ ନ କରଣ ହେଳାରେ । ୨ ।
ବଳରାମ – ଜଗନ୍ନାଥ ! ଦେଖଯାଉଁ ପାକଶାଳେ ଅଛି କି ନା ପାକ
ବେଗକର ଆଣିଦଅ ମତେ
କ୍ଷୁଧାନଳେ ଜଳଇ ଉଦର (ଯେ ଆଜ୍ଞା ଯାଉଛି ଭ୍ରାତ)
ଜଗନ୍ନାଥ – ଏ କି ଅଦଭୁତ ଘଟଣା
ରନ୍ଧନକମଧ୍ୟରେ ପୁଣି କଲାକେ ଏମନ୍ତ,
ଛପନଭୋଗ ସମସ୍ତ କେ ଭୁଞ୍ଜିଣ ଗଲା
ହାଣ୍ଡି ଚୂଲି ଏକଠାବକର

କାଗ୍ରତ୍ତଣ ଚଳାଇଲା କେତେ ? [ କିଛିକ୍ଷଣପରେ ]
ବଳାର — ଜଗନ୍ନାଥ! ବଡ ଝିଅ ବୋଲି ତତେ ବୋଲନ୍ତି ସମସ୍ତେ,
ମତେ ନଦେଇ ତୁ ଖାଉ ସବୁ
ଏଥିକି ତୋ ଉଚିତ ବିଗ୍ରହ
ଦ୍ୱାରେ ଛିଡା ହୋଇଅଛି ମୁହିଁ
ଭିତରେ ତୁ କରୁଛୁ ଭୋଜନ
ଜଗନ୍ନାଥ—ଜ୍ୟେଷ୍ଠଭ୍ରାତ! ଏମନ୍ତ ଅନ୍ୟାଯ୍ୟ ବାକ୍ୟ ବୋଲ କାହିଁପାଇଁ
ଖାଇବ କି ମୁହିଁ, ହାଣ୍ଡି ଚୂଲିଗୁଡ଼ା ନାହିଁ
ବଳରାମ—ଜଗନ୍ନାଥ, ଏକି ଅଦ୍ଭୁତ ଘଟଣା
ବିକଳରେ କହ ଭାଇ ନଦିଶଇ ବୁଦ୍ଧି
କେଉଁଠାରୁ ଆମ୍ଭେ ଆଜ ନକଲେ ଆହାର,
ପ୍ରାଣ ନପାଇବା ନରହର
ଯୋଗୀବେଶ ଧରି ଚାଲ ନଗ୍ର ବୁଲିଯିବା,
ଭିକ୍ଷା ମାଗି ପୋଷିବା ଉଦର
ବେଗକରି ଚାଲ ଆଉ ନକର ବିଳମ୍ବ
କ୍ଷୁଧାନଳେ ଥରଇ ମୋ ଦେହ
ବଡପଣ୍ଡା ଘରଠାକୁ ଯାଇ ବେନିଭାଇ
ମାଗିକିଛି କରିବା ଆହାର [ଯୋଗୀବେଶ ଧାରଣ]
ଜଗନ୍ନାଥ—ହଉ ତେବେ ଚାଲ ଭ୍ରାତ [ଯିବା] ବଡପଣ୍ଡାପୁରେ
ବଳରାମ—ହଁ ଚାଲ ଯିବା ବେଗହୋଇ [ବଡପଣ୍ଡାଦ୍ୱାରେ ପ୍ରବେଶ]

୪ର୍ଥ ଅଙ୍କ — ୨ୟ ଦୃଶ୍ୟ

ଏହିତ ବଡପଣ୍ଡା ଘର [ବଡପଣ୍ଡାର ମାଁ ଓ ସ୍ତ୍ରୀର ପ୍ରବେଶ
ଜଗନ୍ନାଥ—ହଁ ଭ୍ରାତଃ ଏହି ବଡପଣ୍ଡା ଘର, [କିଛିକ୍ଷଣପରେ]
ବୋହୂ— ଦେଖ ମାତ, କେଉଁଠାରୁ ଭିକ୍ଷାର୍ଥୀ ବ୍ରାହ୍ମଣ
ଦୁଇଜଣ ଆସୁଛନ୍ତି ଧାଇଁ

ଶାଶୁ—ଅଟଳା ବୋହୂ, ଚୋରଯେବେ ୨ଜଣ ଆସୁଛନ୍ତି କିଏ
ଘରେ ଆସି କରିବେ ଏ ଚୋରୀ,
କିଳିଦେଇ କବାଟଟେଳା ଆଣ ଠେଙ୍ଗା ବେଗେ
ଗୋଡ଼ାଇ ପିଟି ଛଡ଼ିବା ଏଦୁଇ ଚୋରଙ୍କୁ
ଗୀତ—ବୋହୂ, କେଉଁଠାରୁ ଏହ୍ନ, ଆସୁଛନ୍ତି ଯାଇ ଦେଖିବା ପଣ୍ଡା
ଦୁଇଟା, କୁଣ୍ଡାପଟରେ ଭୁଣ୍ଡାଏ ଦେଖାନ୍ତି ଠେଙ୍ଗାହସ୍ତେ ଧରି
ଠେଙ୍ଗାଟା। ପଦ
ଦେଖ୍ନାଥ ବୋଲେ, ଦୁଇଠେଙ୍ଗା ଦେଲେ ଛାଡ଼ିଯିବ ମୋଟାବୁଦ୍ଧି ଟା
ବଳରାମ—ଜଗନ୍ନାଥ, ପଳାଇଆସ ଏହି ଆଡ଼କୁ ପଳାଇବା
କିଛିଦୂର ଯାଇ ଆମ୍ଭେ ଉଚ୍ଚାରିବା ବେଦ
ଭିକ୍ଷାର୍ଥୀ ଚିହ୍ନି ଣ କାଳେ ଡାକିବେ ଆମ୍ଭଙ୍କୁ ।
ଜଗନ୍ନାଥ—ହଁ ଭ୍ରାତ ଯାଇଁଚାଲ କିଛିଦୂରେ ବେଦ,
ପଢ଼ିବା ଚିହ୍ନି ସେ ନିଶ୍ଚେ ଡାକିବେ ଆସି ଣ ।
ବଳରାମ—ଜଗନ୍ନାଥ, ତେବେ ବେଦପଠନକର ( ଯେ ଆଜ୍ଞା )
ଓଁକାର ପରମବ୍ରହ୍ମ ଓଁକାର ଜଗଦୀଶ୍ୱର,
ଓଁକାର ସର୍ବଭୂତାନାଂ ଅଣାକ୍ଷର ଚ ଉତ୍ତମଃ ।
ଶାଶୁ—ଅଟଳା ଝିଅ, ସେତ ନିଶ୍ଚୟେଁ ଭିକ୍ଷାର୍ଥୀ ବ୍ରାହ୍ମଣ
ଡାକ ତାଙ୍କୁ ଭୋଜନ ଦେବା
ସେ ଯଦି ଚୋର ହୋଇଥାନ୍ତେ
ସେକି ବେଦ ପଠନ କରନ୍ତେ
ସେ ଚୋରନୁହନ୍ତି; ଯାଅ ତାଙ୍କୁ ଡ଼ାକିଆଣ
ବୋହୂ—ହଉ ତେବେ ମୁଁ ଯାଉଛି ତାଙ୍କୁ ଡାକି ଆଣିବି, ଆସ୨ ଆମ୍ଭ
ପୁରେ ପଣ୍ଡାବେନିଜଣେ, ଭୋଜନ କରିବ ତୁମ୍ଭେ ଦୁଇ (ଡ଼ାକି
ବସାଇବା)
ଏହିଠାରେ ବସ ତୁମ୍ଭପାଇଁ ଆଣେ ଯାଇଁ ଅନ୍ନ
ଦେଅ ମାତ ଅନ୍ନ ପଣ୍ଡା ଆସି ବସିଲେଣି

ଶାଶୁ— ଆଲୋ ଏକ ଆଶ୍ଚର୍ଯ୍ୟକଥା ! ମୋ ଅନ୍ନହାଣ୍ଡି କୁଆଡେ ଗଲାଣି ଏ ଲକ୍ଷ୍ମୀଛଡା ଦୁଇଟା କୁଆଡୁ ଆସିଲେ ମୋ ଅନ୍ନ ହାଣ୍ଡି ଓ କୁଆଡେ ଗଲାଣି ଏମାନଙ୍କୁ ଆଉ ଭୋଜନ କରାଦେବା-ଲୋ;ବୋହୂ ! ଏହାଙ୍କ ବେକରେ ଧକାଦେଇ, ଚାଲେ ଦାଣ୍ଡ-ରେ ଛାଡବା,

ବୋହୂ—ହଁ ମାତ ଏଦୁଇଟା ଲକ୍ଷ୍ମୀଛଡା; ଏହାଙ୍କୁ ଦାଣ୍ଡରେ ଛାଡ଼ ଆସିବା ଚାଲ [ହଁ ଚାଲେ ବେକରେ ଧକାଦେଇ ଦାଣ୍ଡରେ ଛାଡ଼ିବା ]

ଶାଶୁ ଓ ବୋହୂ—ଯାଅ ୨ ଭଦ୍ରଲୋକେ, ଯେଉଁବାଟେ ଆସିଛ ସେହିବାଟେ ଯାଅ (ଶାଶୁବୋହୂଙ୍କର ପ୍ରସ୍ଥାନ)

ବଳରାମ—ଜଗନ୍ନାଥ କିକରିବା କହଏବେ ବୁଦ୍ଧି ?
କିସ ଖାଇ ଧରିବା ଏ ପ୍ରାଣ,
ଚଣ୍ଡାଳୁଣୀ ବ୍ରାହ୍ମଣୀତ ବେକେ ଧକାଦେଇ,
ବେନିଜନେ ଛାଡ଼ିଲା ଦାଣ୍ଡରେ,
ଏବେଚାଲ ଯିବାଭାଇ ଅନ୍ୟଘରେ ମାଗି
କବରସାଇକୁ ଚାଲଯାଇଁ
ତହୁଁ କିଛି ଭକ୍ଷିବା ମାଗିଣ; ( ସେଅଳ୍ମା )

୪ର୍ଥ ଅଙ୍କ ୩ୟ ଦୃଶ୍ୟ

( କବରଦ୍ୱାରେ ପ୍ରବେଶ )

ବଳରାମ- ଜଗନ୍ନାଥ ଏହିତ କବର ଭୁବନ,
ଦ୍ୱାରେଯାଇଁ ଚାଲ ତାର ଉଚ୍ଚାରିବା ବେଦ,

ଜଗନ୍ନାଥ—ହଉତେବେ ବେଦପଠନ କରନ୍ତୁ ( ବେଦପଠନ )
ସର୍ବେ ବ୍ରହ୍ମ ସର୍ବେ ବ୍ରହ୍ମ ସର୍ବେ ବ୍ରହ୍ମ ପରାତ୍ପରଃ
କୀଟସ୍ଥାବର ଦେହାନାଃ ହୃଦସ୍ଥଂ ପରମେଶ୍ୱର
ସର୍ବେକୃଷ୍ଣ ୨ ସର୍ବଆତ୍ମା ଏବଂ ହରିଃ

ବଧାତାପୁରୁଷଙ୍କୃଷ୍ଣ କୃଷ୍ଣପର୍ବଣ ପୁଲିତଃ (କବିରର ପ୍ରବେଶ)

କବିର – ଓହୋ ! କିଏଆସି ଦ୍ୱାରେ ମୋର ବେଦଉଚ୍ଚରିଲା
ଜଣାପାଏ ଭିକ୍ଷାର୍ଥୀ ବ୍ରାହ୍ମଣ
ଯାଏମୁହିଁ; ଏବେ ଆଗେ ତାହାଙ୍କ ଗୋଚରେ
ଗୋସାଇଁ ! କେଉଁଠାରୁ କାହାମନ୍ତେ ଆସିଲ ମୋଦ୍ୱାରେ
କିଷ୍ଟହୁଁଛ ବିଳମ୍ବ ନକର
କହବେଗେ ଦେବଇଁ ତତ୍ୱର

ବଳରାମ – କ୍ଷୁଧାର୍ଥୀ ଅତୀଥି ଆମ୍ଭେଅଛୁ ବେନଜନେ
ଭୋଜନନମନ୍ତେ ଅଛୁ ଅସି
ଦେଇ ପାରିବ କି ନାହିଁ କହ ବେଗକର,

କବିର – ଆସହେ ଗୋସାଇଁ ତେବେ ବସ ଏହିଠାରେ
ଖଇକିଛି ଅଛି ଆଣିଦେବଇଁ ତୁମ୍ଭଙ୍କୁ

ବଳରାମ – ହଉତେବେ ଦିଅଯାହା ଅଛି ତୁମ୍ଭପାଶେ [ପ୍ରସ୍ଥାନ)

୪ର୍ଥ ଅଙ୍କ – ୪ର୍ଥ ଦୃଶ୍ୟ

(କବିର ଖଇଦେବା ପରେ ଲକ୍ଷ୍ମୀଙ୍କର ପବନଙ୍କୁ ଚିନ୍ତା )

( ପବନର ପ୍ରବେଶ )

ପବନ – (ପ୍ରଣାମକରି)କହ ମାତ ଏଥିକେ ଚନ୍ତାଲକିମାଇଁ
କିକାର୍ଯ୍ୟକରିବି ଆଜ୍ଞାହେଉ ?

ଲକ୍ଷ୍ମୀ – ଶୁଣତୁହ ପବନରେ ମୋହର ବଚନ
ଯାଇଁବେଗେ କବିର ଭୁବନେ
ଉଡ଼ାଇଣ ନଅ ଖଇ ବେନଭ୍ରାତଙ୍କ ନିକଟୁ

ପବନ – ଯେଆଜ୍ଞା ହୋଇଲାମାତ ଯାଉଅଛିତହିଁ (ପ୍ରସ୍ଥାନ)

୪ର୍ଥ ଅଙ୍କ ୫ମ ଦୃଶ୍ୟ

ପବନ---( ଖଇଉଡ ଇବା )

କବରି – ଆହା ଏ ବ୍ରାହ୍ମଣଙ୍କଖଇ ଗୁଡ଼ିକତ ଉଡଗଲା, ଏ ଆଜିକଣ

ଭୋଜନକରବେ, ଆଜ ମୋର ଘରେତ କିଛି ନାହିଁ ଏମାନେ
କଣ ଭୋଜନ କରବେ, ତେବେ ଗୋସାଇଁ ଅନ୍ୟଘରେ
ଯାଇ ଭୋଜନର ଚେଷ୍ଟାକରନ୍ତୁ ? ମୁ ଯାଉଛି (ପ୍ରସ୍ଥାନ)

ବଳରାମ — ହଉ ତେବେ ଭାଇ ଆମ୍ଭେ ଯାଉଅଛୁ ?

ଗୀତ — ବନ୍ଧୁ ଦ୍ୱନ ପରେ ବୁଲେ

ଆହାରେ ଦାରୁଣ ପବନ କେଉଁ ଦୋଷେ ଉଡାଇ ନେଲୁ ଭୋଜନରେ
ଏତେ କି ନିଷ୍ଠୁର ହୃଦୟ ତୋହର
ଜଳାଉ କ୍ଷୁଧାରେ ପ୍ରାଣରେ । ପଦ ।
ଅଧର୍ମ ଆଗ୍ରହ, ନାହିଁ ତୋ ବିଗ୍ରହ,
ଦୁଃଖ ପରେ ଏକି ଦୁଃଖରେ ।
ଦୟାନାହି ଗିର; ନିଷ୍ଠୁର ସମୀର,
ଉଚିତ ଏହାକି ବିଗ୍ରହେ । ୧

ବଳରାମ — ଜଗନ୍ନାଥ ! ଏବେ ଚାଲ ଯିବା ପଦ୍ମପୁଷ୍କରଣୀ ଯାଏ ?
ତହିଁ ପଦ୍ମମୂଳ କିଛି ଆଣି
ବସି ଦୁଇ ଜଣେ ତହିଁ କରବା ଆହାର
ଅଧିକ ମିଳିଲେ କିଛି ରଖିବା ସାଇତ
ଅବିଲମ୍ବେ ଚାଲ ସେଠାବକୁ

ଜଗନ୍ନାଥ — ଯେ ଆଜ୍ଞା ଯିବା ଚାଲ ପଦ୍ମପୁଷ୍କରଣୀ ପାଶ

୫ମ ଅଙ୍କ — ୧ମ ଦୃଶ୍ୟ

ପଦ୍ମପୁଷ୍କରଣୀ ନିକଟରେ ପ୍ରବେଶ

ବଳରାମ — ଏକି ଅଦ୍ଭୁତ କଥା !
ଯହିଁ ସାତତାଳ ପାଣି ଥିଲା
ତାହା ଏବେ ଗଲା କେଉଁଆଡେ
ପୁଣି ପଙ୍କତ ଶୁଖିଲା
ଶୁଖିଲାରେ ପଦ୍ମମୂଳ ଆସିବବା କାହୁଁ

ଜଗନ୍ନାଥ କହଏବେ କିବୁଦ୍ଧି କରବା
କ୍ଷୁଧାନଳେ ଜଳଇ ଉଦର
ଜଗନ୍ନାଥ — ଜ୍ୟେଷ୍ଠଭ୍ରାତ କିକହବ ମୁହିଁ ଆଉ ନଦଶଇ ବୁଦ୍ଧି
[ସତ୍ୟାନନ୍ଦପଣ୍ଡା ଯୋଗୀର ପ୍ରବେଶ]
ଯୋଗି — ଜୟ ମାତ ଲକ୍ଷ୍ମୀଙ୍କର ଜୟ ୩ ଥର
ବଳରାମ — ଦେଖରେ କହ୍ନାଇଁ ଏଣେକିଏ
ଲକ୍ଷ୍ମୀଙ୍କର ଜୟକହି ଆସୁଅଛି ପଥେ
ଜଗନ୍ନାଥ — ଭ୍ରାତ ! ଜଣେଯୋଗି ଥାଲପୂର୍ଣ୍ଣ ଅନ୍ନଘେନି ଆସୁଅଛି ।
ଗ୍ଭଲଆମ୍ଭେ ତାହାଠାରୁ ଅନ୍ନମାଗି ଭୋଜନ କରିବା
ବଳରାମ — ହଉତେବେ ଗ୍ଭଲ ତାରନକଟକୁଯାଇ ଅର୍ଣ୍ଣମାଗିବା
ଜଗନ୍ନାଥ — ନାଥେ ତୁମ୍ଭରଥାଳରୁ ଆମ୍ଭଙ୍କୁ କିଛି ଅନ୍ନଦିଅ ଆମ୍ଭେ -
କ୍ଷୁଧାରେ ଆତୁର ହେଉଅଛୁ ଶୀଘ୍ରଆମ୍ଭଙ୍କୁ ଅନ୍ନଦିଅ
( ଶ୍ୟାମନାଗରଙ୍କ ବୃତେ )
ଗୀତ
ନାଥ ତୁମ୍ଭ ଥାଳରୁ ଅନ୍ନ, ଦିଅନୋହିଲେ ଆମ୍ଭର ଗଲଜୀବନ । ପଦ ।
ଯେବେ ନାରସକରବ, ତେବେପ୍ରାଣ ନରହିବ
କ୍ଷୁଧାର୍ଥୀ ଅତିଥି ଆମ୍ଭେ ଦିଅ ଭୋଜନ । ୧ ।
ଦୀନଦୟାନିଧିଠାର, ନିଷ୍ଠୁରନୋହି ସତ୍ୱର
ଥାଳୁ ଦିଅଅନ୍ନ ତୋର କର ବହନ । ୨ ।
ଯୋଗି — ଓହୋ ! ଏକି ଅଦ୍ଭୁତ କଥା !
ସରଳବଣିରେ ମୋର ଥାଳପୁରିଥିଲା
ଶୂନ୍ୟହୋଇଗଲା କାହିଁନାହିଁ କିଛି ଥାଳେ ।
ତୁମ୍ଭେ ଦୁଇ ଆସିଲହେ କାହୁଁ
ଲକ୍ଷ୍ମୀଦ୍ରୋହି ହେଇଅଛ ତୁଟହିଁ ନମିଳିବ ଅନ୍ନକାହିଁ ଆଉ
ଯାଅଯେବେ ସମୁଦ୍ର କୂଳକୁ

ମିଳିବ ସେଠାକୁଗଲେଅନ୍ନ
ବିବିଧପଦାର୍ଥ ମୋର ଥାଳଥିଲାପୁର
ତୁଂଭେ ମାଟନ୍ତେଣ ସେ କେଣେଗଲା
ଆଉକି ମୁଁ ଦେବଇ ତୁମ୍ଭଙ୍କୁ
ଏହିପଥେ ଯାଅ, ସମୁଦ୍ର କୂଳକୁ
ଯାଅ ତୁମ୍ଭେ ଯାଉଅଛୁ ଅମ୍ଭେ ( ପ୍ରସ୍ଥାନ )

ବଳରାମ—ହଉ ତେବେ ତୁମ୍ଭେ ଯାଅ ଆମ୍ଭେ ଯାଉଅଛୁ

୪ମ ଅଙ୍କ – ୨ୟ ଦୃଶ୍ୟ ।

( ଲକ୍ଷ୍ମୀଙ୍କର ସୂର୍ଯ୍ୟଙ୍କୁ ଚିନ୍ତା )

ସୂର୍ଯ୍ୟ—କହ କମଳଜା ମତେ ଚିନ୍ତିଲ କିମ୍ପାଇଁ ।
କରିବୁ କି କାର୍ଯ୍ୟ କହ ତାହା ।

ଲକ୍ଷ୍ମୀ—ହେ ତପନ ଏହିମାନ ଅଟନ୍ତି ମୋ ବନିତା
ସହସ୍ରକିରଣେ ତେଜ ପ୍ରକାଶ ସତ୍ୱରେ
ତାତୁବେଗେ ବାଲିମାନ୍ତି ମହାତପ୍ତହୋଇ
ଚାଲିଟିକିଏ ନପାରନ୍ତୁ ପାଦେ

ସୂର୍ଯ୍ୟ – ହଉତେବେ କହିଲଯା କରୁଛୁ ସତ୍ୱରେ ( ପ୍ରସ୍ଥାନ )

୪ମ ଅଙ୍କ – ୩ୟ ଦୃଶ୍ୟ ।

ଜଗନ୍ନାଥ—ଓହୋ ! ଏ କି ଖରାରେ ବାବା ଏଥିରେକି କେହି ଯାଇ-
ପାରେ
ଭ୍ରାତ ଏତେବଡ ଖରାରେ ମୁଁ ନପାରଇ ଚାଲି
ବେଗ ୨ ହୋଇ ତୁମ୍ଭେ କେମନ୍ତେ ଯାଉଛ

ବଳରାମ—ଜଗନ୍ନାଥ, ମୁଁ ଆଗେ ୨ ଯାଉଅଛି ତୁ ମୋ ପଛେ ଆସୁଥା

ଜଗନ୍ନାଥ—ହଉ ତେବେ ଯାଅ ମୁଁହିଁ ଯାଉଛି ପଛରେ

ବଳରାମ – ଏହିତ ଗୋଟିଏ ଗୃହ ଦେଖା ହେଉଅଛି, ଯାଇଁ ତାର
ଦ୍ୱାରେ ଅନ୍ନ ମାଗେ, ଏହିଠାରେ ନିଶ୍ଚୟ ଅନ୍ନ ମିଳିବ ।

କଏ ଅଛ ଗୃହରେ ଆମ୍ଭେ ଅତଥି ଦୁଆରେ ଡ଼ାକୁ ଅଛୁ
ଅନ୍ନ କିଛି ଦିଅ ତୁମ୍ଭେ ଆଣି । କ୍ଷୁଧାନଳେ ଜଳଇ ଉଦର,
( ଦାସୀମାନଙ୍କର ପ୍ରବେଶ )

ଦାସୀ — ସଖି ଗୋ ! ଦ୍ୱାରେ କଏ ଅତଥି ଡାକୁଛି ।
କି ମାଗଇ ଯାଇ ଚାଲ ପୁଛିବା ତାହାଙ୍କୁ ।
ହେଉ ତେବେ ଚାଲ । ଆଗୋ ସହି,
ଏହିପରି ମୋଟା ହୋଇ ଥିଲେ ଦୁଇଗୋଟା ।
ଆମ୍ଭ ସାମନ୍ତାଣିଙ୍କୁ ସେ ଦେଇଥିଲେ ତଡ,
ସେହି ପ୍ରାଏ ଜଣାଯାନ୍ତ ଏହି,
ଚାଲ ଏବେ ବେକେ ଧକା ଦେଇ ।
ନେଇ ତାଙ୍କୁ ଛାଡବା ଦାଣ୍ଡରେ । ( ଧକାଦେବା )
ଯାଅ, ଭଦ୍ରଲୋକ ! ସେହି ଆଡ଼େ ଯାଅ ।
ଯେଉଁବାଟେ ଆସି ଥିଲ ଯାଅ ସେହି ବାଟେ ।

ବଳରାମ — ଓ ହୋ ! ଏକି ଦଣ୍ଡ, ଏକି ଅପମାନ ?
ଅନ୍ନ ମାଗନ୍ତେ କି ଦୋଷ ହେଲା ଦାସୀ ଆସି,
ବେକେ ଧକାଦେଇ ଆଣି ଛାଡ଼ିଲେ ଦାଣ୍ଡରେ !
ଆଉ ପୁଣି ଯିବ ବା କାହିଁକି
ଯାଏଁ ଆଗେ କହିବି ଭାଇରେ ।
( ଜଗନ୍ନାଥଙ୍କର ସାକ୍ଷାତ )

ଜଗନ୍ନାଥ — କି ନିମନ୍ତେ ଫେରିଲ ହେ ଭାଇ,
କେହି ପୁଣି କହିଲା କି କିଛି ।
ତାହା ଏବେ କରନ୍ତୁ ପ୍ରକାଶ,
ସନ୍ଦେହ ମୋଚନ ହେଉ ମୋର ।

ବଳରାମ — ଜଗନ୍ନାଥ ! କି କହିବ ତୋତେ ତାହା,
ଅନ୍ନ ମାଗନ୍ତେଣ ଦାସୀ ଆସି ଦୁଇଗୋଟ ।

କଟୁବାକ୍ୟ କହି ମୋର ବେକେ ଧକା ଦେଇ,
ଆଣି ବେଗେ ଛାଡଲେ ଦାଣ୍ଡରେ ।

ଜଗନ୍ନାଥ — ଜ୍ୟେଷ୍ଠ ଭ୍ରାତ ! ଏତେଅପମାନ ସେହି ଦାସୀ ଅସିଦେଲେ
ମନ୍ଦ କର୍ମ ଯୋଗେ ସିନା ସବୁ ସୁହା ହୁଏ ।
ଏବେ ଚାଲ ଆଉଥରେ ଭ୍ରାତ,
ବେନ୍ନଜନେ ଯିବା ସଙ୍ଗ ହୋଇ ।
କଛ ଦୂରେ ରହି ତହିଁ ବେଦ ଉଚ୍ଚାରିବା,
ପାଷାଣ୍ଡୀ ଦାସୀଏ ସିନା ଦେଲେଧ ଉଡାଇ ।
ଧର୍ମାତ୍ମା କେ ଥିଲେ ନିଶ୍ଚେ ବେଦର ଶ୍ରବଣେ
ନିଶ୍ଚୟ ଡାକି ଆମ୍ଭଙ୍କୁ ଭୋଜନ ସେ ଦେବେ ।

ବଳରାମ — ଜଗନ୍ନାଥ, ଚାଲ ତୁହି ଆଗେ, ମୁହିଁ ଯିବ ତୋହପଛେ ।

ଜଗନ୍ନାଥ — ଯେ ଆଜ୍ଞା (ସେହିପରି କରିବା) ଭ୍ରାତ, ଏହିଠାରେ ରହି
ବେଦ ପଠନ କରନ୍ତୁ ।

ବଳରାମ — ହେଉ ତେବେ ( ବେଦ ପଢିବା )
ସର୍ବଭୂତେ ବ୍ରହ୍ମ ମନ୍ତ୍ର ସର୍ବେ ବ୍ରହ୍ମ ହିଁ କାରଣଂ
ସର୍ବଭୂତେ ଭପେତ୍ ବ୍ରହ୍ମ ବ୍ରହ୍ମ ମନ୍ତ୍ର ପରାତ୍ମଣଂ ।
ବିନ୍ଦୁ ମଧ୍ୟେ ସ୍ୱୟଂ ବ୍ରହ୍ମ ଧ୍ୟାନେ ଚନ୍ଦ୍ରେଯଦା ନରଃ ।
ଚତୁର୍ଦ୍ଧାରେ ଚତୁର୍ବେଦଂ ପିବନ୍ତି ନିଗମୋ ରସଂ ॥

## ୫ମ ଅଙ୍କ — ୪ର୍ଥ ଦୃଶ୍ୟ ।

( ଅଦୃଷ୍ଟକୁମାରୀମାନଙ୍କ ପ୍ରବେଶ )

ନର ଗୃହିଁାରେ ବୃତ୍ତେ ।

ଧନ୍ୟ ସଜନୀ ଆଜି ଏ ଦିନ,
ତୋଷେ ବିଜୟ କଲେଣି ରାଜୀବଲୋଚନ । ପଦ ।
ଯଜୁ ଅଥର୍ବ ଯେ ସାମ    ଋକ ଚାରିବେଦ ନାମ
ଉଚ୍ଚାରନ୍ତି କୃଷ୍ଣ ରାମ କରି ଧନ ଧନ । ୧ ।
ତ୍ରିଭୁବନ ପୁଣ୍ୟ ଗଲା    ବ୍ରହ୍ମାଣ୍ଡ ପୂରି ଉଠିଲା

ଶୁଷ୍କ ତରୁମାନେ ପଲ୍ଲବିଲେ ତତକ୍ଷଣ । ୨ ।
ପଢନ୍ତେ ବେଦ ଶ୍ରୀହରି ଶୁଣି ତା ସିନ୍ଧୁକୁମାରୀ
ନମସ୍କରିଲ ନମସ୍କରିଲ ହେ ଜଗଜ୍ଜୀବନ । ୩ ।

-ଃ୦✱୦ଃ- ( ପ୍ରସ୍ଥାନ )

ଷଷ୍ଠ ଅଙ୍କ ।

ପ୍ରଥମ ଦୃଶ୍ୟ ।

ଲକ୍ଷ୍ମୀ — ଧନ୍ୟ ଧନ୍ୟ ଜୀବନ ମୋ ଧନ୍ୟ ଏ ଭୁବନ
ଆଜ ମୋର କି ଯୋଗରେ ରାତ୍ର ଥିଲା ପାହି ।
ଆଜ କି ମୋ ଫିଟିବ ଦୁର୍ଦ୍ଦଶା ।
କୋଟୀ କୋଟୀ ପାପ ମୋର ଧ୍ୱଂସ ହୋଇଗଲା
ଦୀନ ଦୁଃଖି ଚଣ୍ଡାଳିଣୀ ପୁରେ
ଏବେ ବିଜେ କଲେ ଆସି ଜଗତଜୀବନ
ଧନ୍ୟ ଧନ୍ୟ ଆଜ ଦିନ ମୋର ।
ସଫଳ ହୋଇଲା ଚର୍ମନୟନ ମୋହର
କେତେ କଷ୍ଟ ପାଇଲେ ମୋ ପ୍ରଭୁ
ଏହି ଅଭାଗିନୀ ଲାଗି ଏ ଦଶା ପ୍ରଭୁର ।
ଦାସୀମାନେ ! ଏବେ ଯାଇ ପଚାର ଲୋ ତାଙ୍କୁ ।
କିସ ମାଗୁଅଛନ୍ତି ସେ ବ୍ରାହ୍ମଣ ଗୋସାଇଁ ।
ଦାସୀ — ଯେ ଆଜ୍ଞା ହୋଇଲା ମାତ ପଚାରୁଛୁ ଯାଇ
କିସ ମାଗୁଅଛ ତୁମ୍ଭେ କହ ପଣ୍ଡାମାନେ
କେଉଁ କାର୍ଯ୍ୟେ ଆଗମନ ଏଥି ।
ଜଗନ୍ନାଥ — କି ମାଗିବୁ ବେନିଜନେ କ୍ଷୁଧାର ଆତୁରେ
ଅନ୍ନ ଭିକ୍ଷା କରୁଅଛୁ ଆସି
ଦେଲେ ଦେବ ନାହିଁ ଏବେ ଏଠାରେ ଆମ୍ଭର
ଗଲା ପ୍ରାଣ ଯେ ଇଚ୍ଛା ତୁମ୍ଭର । ( ବସିପଡ଼ିବା )
ଦାସୀ — ବ୍ୟସ୍ତ ନୋହି ପଣ୍ଡାମାନେ କ୍ଷଣ ଏହିଠାରେ ।

ପୁଚ୍ଛା କରିଅଛୁ ଆମ୍ଭେ ମାତାଙ୍କ ନିକଟେ ( ଗମନ )
ମାତ; ବସି ଦ୍ୱାରେ ପଣ୍ଡା ବେନି ମାଗୁଛନ୍ତି ଅନ୍ନ ।
କି ବୋଲି ବୋଲିବୁ ଆଜ୍ଞା ଦିଅନ୍ତୁ ବହନ ।

ଲକ୍ଷ୍ମୀ — ଦାସୀମାନେ; ପଚାରି ଯାଇଣ ସେହି ବେନି ଗୋସାଇଁଙ୍କୁ ।
ଚଣ୍ଡାଳୁଣି ଘରେ ଅନ୍ନ କିପରି ଭୁଞ୍ଜିବେ
ଚଣ୍ଡାଳ ବୋଲିଣ ତାଙ୍କୁ କହିବେ ଜଗତେ
ବେନି ଗୋଟି ଭାଇ କିଣ ହୋଇବେ ଚାଣ୍ଡାଳ

ଦାସୀ — ଯେ ଆଜ୍ଞା ହୋଇଲା ମାତ କହୁଅଛୁ ଯାଇଁ
ହେ ଦ୍ୱିଜ ଗୋସାଇଁ ! ଚଣ୍ଡାଳୁଣି ଗୃହେ ଅନ୍ନ ଭୁଞ୍ଜିବେ କିପରି
ପଣ୍ଡା ହୋଇ କିପରି ବା ହୋଇବେ ଚାଣ୍ଡାଳ

ବଳରାମ — ଯିବ ଗଳ୍ଭବେଳେ କି ଖୋଜିବୁ ଜାତି ଗୋତ୍ର
ତେବେ ଏହା କର ତୁମ୍ଭେ ମାନେ
ଦେଇ ପାର ଯେବେ ନୂଆ ଶଙ୍ଖା
ରନ୍ଧନ କରି ଭୁଞ୍ଜିବୁ ଆମ୍ଭେ ତେବେ ଜାଣ

ଦାସୀ — ମାତ ଜଗତ ଜନନୀ ! ନୂଆ ସଙ୍ଖା ଦିଅ ବୋଲି ବୋଲନ୍ତି
ଗୋସାଇଁ
ନିଜେ ରାନ୍ଧି କରିବେ ଭୋଜନ
ଏଥିକୁ କି ବିଚାର ତୁମ୍ଭର

ଲକ୍ଷ୍ମୀ — ଦାସୀମାନେ ! ନିଅ ତେବେ ନୂଆ ସଙ୍ଖା ଦେଇ ଆସ ତାଙ୍କୁ
ତଣ୍ଡୁଳାଦି କରି ଯାହା ହୁଏ ଆବଶ୍ୟକ
ଭଣ୍ଡାରରୁ ନେଇ ବେଗେ ଦେଇ ଆସ ଯାଇଁ ( ଯେ ଆଜ୍ଞା )

ଦାସୀ — ହେ ପଣ୍ଡାମାନେ ! ନିଅ ତେବେ ନୂଆ ସଙ୍ଖା ଭୁଞ୍ଜ ସୁଖେ ରାନ୍ଧି
ତଣ୍ଡୁଳାଦି ହାଣ୍ଡି ସହ ଆଣିଛୁ ସଜାଡ଼ି

ବଳରାମ — ହେଉ ତେବେ ଦିଅ ଆମ୍ଭେ ରନ୍ଧନେ ଯାଉଛୁ
ଜଗନ୍ନାଥ ! ଯୋଗାଡ଼ ଦେଉଛି ମୁହିଁ କରତୁ ରନ୍ଧନ (ଯେ ଆଜ୍ଞା)

( ଲକ୍ଷ୍ମୀଙ୍କର ଅଗ୍ନୀଙ୍କ ପ୍ରତି ସ୍ତୁତି — ଗୀତ — କହ କୃପାନିଧି ବୃତ୍ତେ )

ଜୟ ବୈଶ୍ୱାନର; ଜୟ ବିଶ୍ୱେଶ୍ୱର, ଜୟ ୨ ହେ ହୁତାଶନ ।

ଅଧମି ଜଣାଣ, ଶୁଣିଣ ବହନ କର ମୋ ଅଭିଷ୍ଟ ସାଧନ । ପଦ ।

ମୋର ବାସେ ଯେବେ କରିବେ ରନ୍ଧନ; ଭୋଜନ କରିବେ ଜଗତ ଜୀବନ; ନାରିକ ପୁରୁଷେ କିମ୍ପାଇ ଖୋଜିବେ ଦେବେ ହେଲେ ଏ କାର୍ଯ୍ୟମାନ ।୧।

ଘାଣି ନତାଡିବ ଯେମନ୍ତେ କର, ସ୍ତମ୍ଭନ ହୋଇ ରହିବ ସେଠାର ଦୟାନିଧି ଚିନ୍ତ ଏହି ମୋ ବିନତି ଘେନ ହେ ଦେବ ହୁତାଶନ ॥ ୨

( କିଛିକ୍ଷଣପରେ )

ଲକ୍ଷ୍ମୀ — ଦାସୀମାନେ ପଣ୍ଡ୍ରଣ ଆସ ବେଗେ ପଣ୍ଡାଙ୍କୁ ନେଇ ଯାଇଁ
ପାକ ଶେଷହେଲା କିନା ଯିବେ ସ୍ନାନ କରି ( ଯେ ଆଜ୍ଞା )

ଦାସୀ — ପଣ୍ଡାମାନେ ! ପାକ ଶେଷ ହେଲା କି ନା କହ
ନିଅ ତେଲ ମାଖି ହୋଇ ଯାଅ ସ୍ନାନ କରି

ବଳରାମ — ଜଗନ୍ନାଥ ! କହ ଅନ୍ନ ହେଲାଣି କି ନାହିଁ
କ୍ଷୁଧା ନଳେ ଜଳଇ ଉଦର

ଜଗନ୍ନାଥ — ଭ୍ରାତ ! ଅନ୍ନ କି ହୋଇବ ମୋଠେ ପାଣି ତାତୁ ନାହିଁ ।
ଫୁଙ୍କି ୨ ଆଖିକାନ ହେଲାଣି ମୋ ବନ୍ଦ
କ୍ଷୁଧା ହେଲେ କହ କି କରିବା

ବଳରାମ — ତୁହି କି ଅଧୁଆ ମୁହିଁ । ଅଟୁରେ କହାଇଁ
ରନ୍ଧନ ନଜାଣି ହୋଇ ଅଛୁ ରନ୍ଧୁଣିଆଁ
ଆଡ ହୁଅ, ପାକଶାଳେ ଯାଉଅଛି ମୁହିଁ (ପାକଶାଳେ ଯାଇଁ)

ଓହୋ ? ଏକ ଧୂଅଟର ବାବୁ ? ଏ ଧୂଆଁରେତ ଆଉ କେହି ରହି ହେବ ନାହିଁ ଏଠି ବସି ଫୋଂଫୋଇ କଣ କରିବା ।
ଚୁଲିଟାତ ମୋଠେ ଜଳୁ ନାହିଁ ? ଖାଲି ଧୂଆଁ ହେଉଛି
ଆଉଥରେ ଫୁଙ୍କିବା, ନା ଏ ଚୁଲି ଆଉ ଜଳିବ ନାହିଁ
ବୃଥା ଚେଷ୍ଟା କରିବାର ନୁହେଁ ଏହାକୁ କି ପିଟି ଦେଲେତ

କାମସରେ ( ହାଣ୍ଡି ଭାଙ୍ଗି ବସିବା )

ଦାସୀ – ପଣ୍ଡାମାନେ, ହାଣ୍ଡି ଚୁଲି ଭାଙ୍ଗି ତଣ୍ଡୁଳାଦ ଫିଙ୍ଗି ଦେଲ
ଆଜ କି ଭୁଞ୍ଜିବ ଗୋସାଇଁ

ବଳରାମ – ଦାସୀମାନେ – ତୁମ୍ଭ ଘରୁ ଅନ୍ନ ଆଣି ଦିଅଯା ଆମ୍ଭଙ୍କୁ
ନୋହିଲେ ଆମ୍ଭର ଯିବ ଜୀବ ଏହିଠାରେ

ଦାସୀ – ଗୋସାଇଁ ! ଚଣ୍ଡାଳୁଣୀ ଗୃହେ ଅନ୍ନ ଭୁଞ୍ଜିବେ କିପରି ?

ବଳରାମ – ଦାସୀ ! ଜୀବ ଯିବା ସମୟେ କି ଖୋଜ ଜାତି ଗୋତ୍ର
ଯାଇଁ ବେଗେ ଆଣି ଦିଅ ଅନ୍ନ
କ୍ଷୁଧା ନଳେ ଜଳଇ ଉଦର

ଲକ୍ଷ୍ମୀ – ଦାସୀ ! ପାକ ଶେଷ କରି ସ୍ନାନ କଲେଣି ଗୋସାଇଁ ?

ଦାସୀ – ପାକ କି ହୋଇବ ମାତ କରିବେ କି ସ୍ନାନ
ଫୁଙ୍କି ୨ ଥକିଲେ ସେ ନଯଳନ୍ତେ ଚୁଲି
ହାଣ୍ଡି ଚୁଲି ଭାଙ୍ଗି ତଣ୍ଡୁଳାଦ ଦେଲେ ଫିଙ୍ଗି
କହୁଛନ୍ତି ତୁମ୍ଭ ଘରୁ ଆଣି ଦିଅ ଅନ୍ନ
ଏଟକୁ ଯେ ଇଚ୍ଛା ତବ କରନ୍ତୁ ବିଚାର

ଲକ୍ଷ୍ମୀ ଏହୋ ! କେତେ କଷ୍ଟ ପାଇଲେ ମୋ ପ୍ରଭୁ ( ସ୍ୱୀଣସ୍ୱରେ )
ଶୁଣି ତାଙ୍କ ଦୁଃଖମାନ ଧିକ ଏ ଜୀବନ
ନଯାଇଣ ରହିଛି ଯା ମୋର
ଏବେ ମୁହିଁ ଯାଇ ପାକଶାଳେ
ସ୍ୱହସ୍ତେ ରନ୍ଧନ କରି ପ୍ରଭୁଙ୍କୁ ଅର୍ପିବ
( ପାକସାଳେ ରନ୍ଧନ କରିବା )
ଦାସୀ ! ଶେଷ ହେଲା ପାକ ଏବେ ଯାଇଁ ତୁମ୍ଭେମାନେ
ତଇଲ ନେଇଣ କର ଅଙ୍ଗ ମରଦନ
ସ୍ନାନଶେଷେ ପୀତାମ୍ବର ଦିଅ ପିନ୍ଧିବାକୁ
ବ୍ରାହ୍ମଣ ବୋଲିଣ ତାଙ୍କୁ ନବତାରି ମନେ
ତାଙ୍କ ନିଜ ଦାସୀ ଅଟେ ମୁହିଁ

ଯାଅ ତୁମ୍ଭେ ବିଳମ୍ବ ନକର

ଦାସୀ—ଯେ ଆଜ୍ଞା ହୋଇଲା ମାତ ଯାଉଛୁ ବହନ

( ତଇଲ ବସନ ନେଇ ଗମନ )

ଆସ ପଣ୍ଡ୍ରାମାନେ ତଇଲ ମରଦନ ହୋଇ

ସ୍ନାନ ସାରି ଯିବ ମଣୋହିଁକୁ

( ହେଉ ତେବେ ଏଠିକୁ ଆସ-ଦାସୀମାନେ ଅଙ୍ଗ ମରଦନ

କରିବା ସ୍ନାନପରେ ପୀତାମ୍ବର ପିନ୍ଧାଇବା )

ବଳରାମ — ଜଗନ୍ନାଥ ! କହ ଏମନ୍ତ ପ୍ରକାରେ କମ୍ପାଇ ଆମ୍ଭଙ୍କୁ

ମାନ୍ୟ କରେ କେଉଁ ମାନସରେ

ପୁରୁଷ ଜଣେତ ଏଥି ଦେଖାଯାଏ ନାହିଁ

ଦେଖୁ ଅଛୁ ସମସ୍ତେ ଅବଳା

ଶୂଳ ଦେବା ପ୍ରାୟେ ମତେ ହେଉଅଛି ଜଣା

ଜଗନ୍ନାଥ — ଅନ୍ୟ ନଭାବ ହେ ଭ୍ରାତଃ, ଆଜ ଏହିପୁରେ

କର୍ତ୍ତ ନଷ୍ଟ ହୋଇବେ ଆପଣ

ଦାତା ଦେଉଅଛି ଆମ୍ଭେ ଛାଡ଼ିବା କମ୍ପାଇଁ

ଚାଲ ଏବେ ସ୍ନାନ ସାରି ଯିବା ଭିତରକୁ

ବଳରାମ — କି କଥା କହୁଛୁ ହରି ପାଗଳ ପରିଏ

ଆଉ କ୍ଷଣକରେ ଆମ୍ଭେ ପ୍ରାଣ ନପାରିବା

ସ୍ତ୍ରୀ ଛଡା ପୁରୁଷକେ ନାହିଁରେ ଏଠାରେ

ଚାଲ ଆମ୍ଭେ ବେଗହୋଇ ଯିବାରେ ପଳାଇ

ନଗଲେ ତୁ ନାହିଁ ଥାଅ ମୁହିଁ ଯାଉଅଛି ।

ଜଗନ୍ନାଥ — ରହ ୨ ଭ୍ରାତ କିମ୍ପା ପଳାଇଛ ଡରେ

ତୁମ୍ଭେ ପ୍ରଭୁ ହୋଇ ଭୃତ୍ୟ ଡରି ପଳାଉଛ

ଆସ ୨ ମୋର ସଙ୍ଗେ ଯିବ ଭିତରକୁ

[ହସ୍ତଧରି ଘେନିଯିବା]

ଲକ୍ଷ୍ମୀ — ଦାସୀ! ଯାଅ ବେଗେ ପ୍ରଭୁଙ୍କୁ ଲୋଟମାଣୋହିକୁ ଆଣ

ସ୍ନାନ ଅଛି ହୋଇ ଆଉନକର ବିଳମ୍ବ [ଯେଆଜ୍ଞା]

ଦାସୀ — ଗୋସାଇଁ ନେକର ଏବେ ଆସନ୍ତୁ ଭିତରେ
ସ୍ଥାନ ଅଛି ହୋଇ ତୁମ୍ଭେ ଆସ ବେନଜନେ
[ବଳରାମନଯାଇ]
ବଳରାମ — ପଦ ଦୁଇଖଣ୍ଡ ତୁମ୍ଭେ ଏଠାବକୁ ଆଣ
ଭିତରକୁ ଯିବୁନାହିଁ ଆମ୍ଭେ
[ହସ୍ତଧର ଜଗନ୍ନାଥ ଘେନିଯାଇ ଆସ୍ଥାନରେ ବସାଇବା]
ଜଗନ୍ନାଥ — ଶୁଭ୍ରଲ ଭାତ କାରେ କରଭସ୍ତ (ବସିବ)
ଲକ୍ଷ୍ମୀ — ତୁଳସୀଗୋ ! ଅନ୍ନ ନେଇ ପରଶ ତାହାଙ୍କୁ
ବଡ ସାନ ପଚାରଣ ଅନ୍ନ ଲଗାଇବ [ହିଉ ଦାଅ]
ତୁଳସୀ — ହେ ଦ୍ଵିଜ ଗୋସାଇଁ ! ତୁମ୍ଭମଧ୍ୟେ ବଡ କିଏ ସାନ କିଏ ?
କହନ୍ତୁ ଅନ୍ନଲଗାଇବ ମୁହିଁ
ବଳରାମ — କାଶୀକି ହେଲୁ ବ୍ରାହ୍ମଣୀ ଆମ୍ଭେ ଅଟୁ ବଡ
ଆମ୍ଭଠାରେ ଦିଅ ଆଗକରି
ତୁଳସୀ — ଗୋସାଇଁ କୋପିଲ କାଶୁଣି ତୁମ୍ଭେ ବଚନ ମୋହର
ପୁଛନ୍ତେ ବା ହେଲା କେଉଁ ଦୋଷ
ଜଣାଯାଏ ତୁମ୍ଭେ ବଡ ଅଟ ରାଗୀପଣ୍ଡା [ଅନ୍ନ ଲଗାଇବା]
ତୁଳସୀ — କିହୋ ପଣ୍ଡା ତୁମ୍ଭ ଅନ୍ନଘେନିଗଲା କିଏ ?
କି ଆଶ୍ଚର୍ଯ୍ୟ ଅଟେ ଏହୁ କଥା
ବଳରାମ — ଦେଖୁଅଛୁ କ୍ଷୁଧାର୍ଥୀତ ହୋଇଅଛୁ ଆମ୍ଭେ
ପୁଣି ଆସି ଦୃଷ୍ଟି କରୁ ଘେନିଗଲା କିଏ
କ୍ଷୁଧାର୍ଥୀ ହୋଇଣ ଥିଲୁ ଆମ୍ଭେ
ତେଣୁ ଗ୍ରାସେ ଗ୍ରାସେ ତାହା ଭକ୍ଷିଲୁ ସମସ୍ତ
ଯାଅ ବେଗେ ଆଣ ଆଉ ଅନ୍ନ
ତୁଳସୀ — ହେ ପଣ୍ଡା କୁଟୁମ୍ବଗତ ଅଛ କାହିଁ ଆସି
ଦ୍ଵିଜ ଭାର୍ଯ୍ୟା ନାହାଁନ୍ତି ତୁମ୍ଭର
ପେଟଲାଗି ବୁଲୁଅଛ ଦେଶଦେଶ ହୋଇ

ଏକାଏକା ଥରେ ଭକ୍ଷି ଦେଉଅଛ ସବୁ
ଏକଦେ ଅଣିମୁଁ ଏବେ ଦେଉଛ ସମସ୍ତ
ଯେତେ ଇଚ୍ଛା ଭୁଞ୍ଜହେ ଗୋସାଇଁ
( ଏକଦ ସମସ୍ତଦେବାର )
ବଳରାମ—ଜଗନ୍ନାଥ ! ଲକ୍ଷ୍ମୀଙ୍କ ରନ୍ଧନଦର ଲାଗେ ଏସମସ୍ତ ?
ଜଗନ୍ନାଥ—ଜ୍ୟେଷ୍ଠଭ୍ରାତ ! ଲକ୍ଷ୍ମୀପଣ ସ୍ୱୀକୃତ ତଡଦେଲେ ଆମ୍ଭେ
ଆଉ କାହୁଁ ଖୋଜନେଲେ ପାଇବା
ଲକ୍ଷ୍ମୀ—ତୁଳସୀ ଗୋ, ଦେଇଆସ ଗୋସାଇଁଙ୍କୁ ନେଇ ଏ ପିଷ୍ଟକ
(ହାତତେବେ ଦଅ)
ତୁଳସୀ—ନିଅନ୍ତୁ ଗୋସାଇଁ ଏହ ସୁସ୍ୱାଦୁ ପିଷ୍ଟକ
ଜଗନ୍ନାଥ—ଭ୍ରାତଃ ମୋର ମନକଥାକୁ ଯେ ଲକ୍ଷ୍ମୀ ଜାଣିଥାଏ
ଭୋଜନ ଶେଷକୁ ଏକ ଦଅଇ ପିଷ୍ଟକ
ଜଣାଯାଏ ଏରନ୍ଧନ କାର୍ଯ୍ୟପ୍ରାପ୍ତ ସେହ
ଏହାକୁ ହୋଇବ ଆଉ ନବର ତାଙ୍କର
ଜଣାହେବ ସମସ୍ତ ଏକ୍ଷଣୀ
ଚାଲ ଏବେ ହସ୍ତ ପ୍ରକ୍ଷାଳନେ
ବଳରାମ—ଜଗନ୍ନାଥ ! ଜାଣୁଯେବେ ଏହଅଟେ ଲକ୍ଷ୍ମୀଙ୍କ ନବର
ଆଉତେବେ ଭୟ କାହିଁପାଇଁ
କୌଣସିପ୍ରକାରେ ଏବେ କର ମେଳାମେଳ
ଲକ୍ଷ୍ମୀ—ଦାସୀମାନେ ! କହୁଅଛ ମୁହିଁ ଯାହା କର ତାହା ତୁମ୍ଭେ
(ଗୀତ-କୀର୍ତ୍ତନସ୍ୱରେ)
ପଶୁର ୨ଦାସୀ ପଶୁଲଲେ ତାଙ୍କୁ ଯାଇ ବନ୍ଧ ହୋଇଅଛନ୍ତି ନା
ସେ ଗୋସାଇଁ ବେନିଭାଇ ।।ପଦ।।
ଭିକ୍ଷାରୀହୋଇ କମ୍ପାଇ ନଗରେ ବୁଲନ୍ତି ଦେହ
ଧୂଳ ଭରଜା କନାହିଁ, ଭ୍ରମନ୍ତି ନିରସ ହୋଇ ।।୧।।
ଦୟାନିଧିର ବନଖ ବୁଦ୍ଧି ଣ ଅସ ୯୬ତ

କେଉଁ କାରଣେ ଭ୍ରମନ୍ତ ଦୀନବେଶରେ ଗୋସାଇଁ ॥୨॥

ଦାସୀ—ଗୋସାଇଁ ଆପଣଙ୍କର ନିବାସ କେଉଁଠାରେ ? ଆପଣ ବନ୍ଧ ହୋଇଅଛନ୍ତି କି ନାହିଁ ? ଆପଣଙ୍କର ସ୍ତ୍ରୀ ପୁତ୍ର କେହିଅଛନ୍ତି କି ନାହିଁ ? ଆପଣଙ୍କର ଗୁଆବାଡ଼ି ଶାସନାଦି ଅଛିକି ନାହିଁ ? ଏପରି ପେଟନିମନ୍ତେ ବୁଲୁଅଛନ୍ତି କାହିଁକି ? ଅନୁଗ୍ରହ କରି ଏସମସ୍ତ କାରଣ ପ୍ରକାଶକରନ୍ତୁ

ଜଗନ୍ନାଥ—ଦାସୀମାନେ ! କି କହିବୁ ଆମ୍ଭର ବୃତାନ୍ତ

ମନ୍ଦକର୍ମ ଅଟଇ ଆମ୍ଭର
ଲକ୍ଷ୍ମୀପରି ସ୍ତ୍ରୀ କୁତ ବସିଲୁ ହରାଇ
ଗୁଆ ବାଡ଼ି ଶାସନ ପାଇବୁ ଆମ୍ଭେ କାହିଁ
ସ୍ତ୍ରୀ ପୁତ୍ର ଆଉ ଆମ୍ଭେ ପାଇବୁ କେଉଁଠୁ
ତୁମ୍ଭ ସାମନ୍ତାଣିକ ଗୋ ଘରୁର ଯାଇଣ
କେତେ କଷ୍ଟ ଭୋଗିବୁ ଏପରି

ଦାସୀ—ପାଗଳପରିଏ କିମ୍ପା ବୋଲ ଏ ବଚନ
କ୍ଷୁଧା ଲାଗୁଥିଲା ଅନ୍ନ ଭିକ୍ଷିଲତ ଏବେ
ଆମ୍ଭ ସାମନ୍ତାଣିକି ତୁମ୍ଭେ ଖୋଜିଲ କାହିଁକି

ବଳରାମ—ଦାସୀମାନେ ! ମୋହର ପିଲାଭାଇ ନଜାଣଇ କିଛି
ତୁମ୍ଭ ସାମନ୍ତାଣିକି ଏ କଥା ନକହିବ
ତୁମ୍ଭଙ୍କୁ ମୁଁ କହୁଛି ବିନୟେ

ଜଗନ୍ନାଥ—ଜ୍ୟେଷ୍ଠଭ୍ରାତ ! ଭୟ ଆଉ କର କାହିଁପାଇଁ
ଏ ଅଟଇ ଲକ୍ଷ୍ମୀଙ୍କ ସଦନ

ବଳରାମ—ଜଗନ୍ନାଥ ! ଜାଣ ଯେବେ ବେଗେଯାଅ ଲକ୍ଷ୍ମୀଙ୍କ ନିକଟେ
ଜଣା ଯାଉଁ ଏଦୋଷ ମୋହର
ହସ୍ତ ଧରି ବୋଲ ତାଙ୍କ ଇଚ୍ଛା ହୁଏ ଯହିଁ
ତହିଁ ଯାଇ କରନ୍ତୁ ସେ ବଜେ
ଆମ୍ଭେ ଭିକ୍ଷ୍ୟା ମାଗିବାର ସମସ୍ତେ ଜାଣିଲେ
ଏବେ ମନୁ ତେଜନ୍ତୁସେ ମାନ (ଯେଆଜ୍ଞା)

( ଜଗନ୍ନାଥଙ୍କର ଲକ୍ଷ୍ମୀଙ୍କ ନିକଟେ ଗମନ ଓ ଜଗନ୍ନାଥଙ୍କର ପଦ ଯୌତକର ଲକ୍ଷ୍ମୀଙ୍କର ପ୍ରଣାମ )

ଲକ୍ଷ୍ମୀ—ହେ ଶ୍ରେଷ୍ଠଗୋସାଇଁ ! ଗୃଣ୍ଡ୍ରାଳୁଣ୍ଡି ବୋଲିମତେ ଦେଲ
ଘଉଡ଼ାଇ
ଏବେ ଗୃଣ୍ଡ୍ରାଳୁଣ୍ଡିପୁରେ କଲତ ଭୋଜନ
ଗୃଣ୍ଡ୍ରାଳ ବଣ୍ଟାଳ ତୁମ୍ଭେ ହେଲ ବେନଭାଇ
ପୁଣିଆସି ମୁଖତୁମ୍ଭେ ଦେଖା କେଉଁପର
ଧିକ ତୁମ୍ଭ ବଡପଣ ଧିକ ତୁମ୍ଭ ଠାଣ
ଧିକତୁମ୍ଭ ବଳତେଜ ଧିକତୁମ୍ଭପଣ
ଆଉବା କି ଅଛି କାର୍ଯ୍ୟ ତୁମ୍ଭର ମୋଠାରେ
କହ ଏବେ ରାଜୀବଲୋଚନ

( ଜଗନ୍ନାଥ ନିରୁତର ଗୀତ )

( ଜୟହେ ଜଗମୋହନ ବୃତ୍ତେ )

ତେଜ କମଳନ ମନୁମାନ ମାନିନୀ ସଜନ
ରୋଷତେଜ ତୋଷେଭାଷ ମଧୁରବାଣୀ ସଙ୍ଗିନୀ । ପଦ ।
ନହୋଇ ନିଷ୍ଠୁରଚିତ ଚଳସଙ୍ଗରେ ତୁରିତ ।
ଟଳବ ଗଞ୍ଜିଲ ମିତ, ଆଜ ନ କଣ୍ଟାଳ ଧନ । ୧
ଆମ୍ଭେ ଭିକ୍ଷାର୍ଥୀ ସଂସାର, ଜାଣିଲେ ଗୋ ସମାବର
ଜଗତେ କୀର୍ତ୍ତି ତୁମ୍ଭର, ପ୍ରକାଶିଲା ଚନ୍ଦ୍ରାନନ । ୨ ।
ସହଦୋଷ କଲୁଯାହା, ଦୟାବନ୍ଧ କ୍ଷେମତାହା ।
ଯାହାଇଚ୍ଛା କରତାହା, ଦୟାନିଧିର ଦଇନ । ୩ ।

ଲକ୍ଷ୍ମୀ—ନାଥ ! ଏବେ ଯା ବୋଲଇ ଦାସୀ କରନ୍ତୁ ଶ୍ରବଣ
ସୁହୃଦୟେ ପ୍ରସନ୍ନେ ଉତ୍ତର ଦିଅବେଗେ ଜଗତ ଗୋସାଇଁ

ଗୀତ

( ବନ୍ଦୁଦନପରେ ବୃତ୍ତେ )

ଜଗତ ଜୀବନ, ଜଗତ ପାଳନ,

ସତ୍ୟକଲେ ଯିବ ସଙ୍ଗରେ ।

ଜଗତର ଜନ, ଭକ୍ଷିବେ ମୋ ଅନ୍ନ

ହସ୍ତ ନଧୋଇବେ ଜଳରେ । ପଦ ।

ଚଣ୍ଡାଳ ହସ୍ତରୁ, ବ୍ରାହ୍ମଣ ଖାଇଣ,

ପୋଛୁଥିବେ ହସ୍ତ ମୁଣ୍ଡରେ ।

ତହିଁ ଜାତି ଦୋଷ, ନହେବ ପ୍ରାଣେଶ,

ଏ ଭଷ ଭାଷ ଶ୍ରୀମୁଖରେ । ୧ ।

ଆଉ ମାର୍ଗଶୀର, ମାଘ ଫଗୁଣାଦ୍ଧ,

ବୈଶାଖ ଜ୍ୟେଷ୍ଠ ଆଷାଢରେ

ମୋର ପ୍ରିୟବ୍ରତ, ଅଟେ ଗୁରୁବାର

ପଡ଼ଚଳିବ ମୁଁ ସଂସାରେ ।୨।

ଦୟାନିଧି ଧନ, ଏହି ନିବେଦନ

ନଭୁଲିବ ସେ ସମୟରେ

ଧରୁଛି ପୟର, କ୍ଷମ ପ୍ରାଣେଶ୍ୱର,

ଯେ ଦୋଷ ହୋଇଛି ଦାସୀରେ ।୩।

ଜଗନ୍ନାଥ—ପ୍ରିୟସହି ! ଶୁଣଏବେ କହୁଅଛି ଯାହା

ଅନ୍ୟ ନହୋଇବ କାଳେ୨

ଗୀତ

ଯାହା ଇଚ୍ଛା ପ୍ରିୟସହି, ନା, ବୋଲି ନକହିବୁ ।

ଯେତେ ଦୋଷକଲେ ଆଉ, ମନେତାହା ନଧରିବୁ । ପଦ ।

ତୁମ୍ଭଇଚ୍ଛା ଯହିଁ ତହିଁ; ଯିବ ଆମ୍ଭ ମନାନାହିଁ

ବେନଭ୍ରାତେ ବଇଦେହି, ସଦାଦୟା କରିଥିବୁ । ୧ ।

ନିକଟାଳି ନମଟାଳି, ସବୁଙ୍ଗଲେ ସିନ୍ଧୁବାଳି ।

ଧନ ଦୟାନିଧି ଭଞ୍ଜ ଚଳ ନୀଳାଚଳେ ଯିବୁ । ୨ ।

ଲକ୍ଷ୍ମୀ—ନାଥ ! ଆଉ୨ ଏବେସବୁ ପାଇଲି୨

ଚଳ ନୀଳାଚଳେ ତୁମ୍ଭେଭାତ ଘେନି ସଙ୍ଗେ

ଦାସୀଙ୍କ ସହିତ ମୁହିଁ ଯାଉଅଛି ପଛେ

ଜଗନ୍ନାଥ—ପ୍ରୀତେସ୍ତୁ କମଳିଣୀ ଗତକଥା ତେଜିମନୁ ଆସ ଆଂଭସଙ୍ଗେ

ତେଜି କିଏ ପାରେ ତୁଂଭେ ଜଗତ ଜନନୀ

ଯାଉଅଛି ମୁହିଁ ଏବେ ଭ୍ରାତଙ୍କ ସହିତ

ଦାସୀଙ୍କ ସହିତେ ତୁଂଭେ ଆସ ସଙ୍ଗ ହୋଇ

(ଯେ ଆଜ୍ଞା)

ଜ୍ୟେଷ୍ଠଭ୍ରାତଃ ଚଳ ଏବେ ଯିବା ନୀଳାଚଳେ

ଆଂଭପଛେ ଦାସୀ ସହ ଆସିବେ କମଳା

ବଳରାମ—ଜଗନ୍ନାଥ ଚାଲ ତେବେ ଯିବା ନୀଳାଚଳେ (ପ୍ରସ୍ଥାନ)

ଲକ୍ଷ୍ମୀ – ଦାସୀମାନେ, ଚାଲ ଏବେ ସଙ୍ଗହୋଇ ଯିବା ନୀଳାଚଳେ

ସଙ୍ଗହୋଇ ବେନିଭ୍ରାତେଃ ଗଲେଣି ଆଗରେ

ଦାସୀ—ମାତ ଜଗତଜନନୀ ! ଚାଲ ତେବେ ଏବେ ଆମ୍ଭେ ଯିବା ନୀଳାଚଳେ (ସମସ୍ତଙ୍କର ପ୍ରସ୍ଥାନ )

( ଅଦୃଷ୍ଟ କୁମାରୀଙ୍କର ପ୍ରବେଶ ଗୀତ)

ଶୁଣ୨ ଜନେ, ଦେଖହେ ନୟନେ, ପ୍ରକୃତି ପୁରୁଷ ଖେଳାଲୀଳା ।
କଳୁଷ ବିନାଶ, ହେବପୁଣି ତୋଷ,ସୁଧାମୟରସ ଲକ୍ଷ୍ମୀଲୀଳା । ପଦ ।
ଅନ୍ତରୁ ଅନ୍ତର, ହୋଇଯିବ ଦୂର, ହରିନାମକର ଜପାମାଳା ।
ମାୟାମୋହେ ପଡ଼, ନମରହେ ବୁଡ଼, ଚିନ୍ତ ଚକ୍ଷୁଭିଡ଼ ଚକାଡୋଳା, ।
ଅସାର ସଂସାର, ନାମକର ସାର, ପାରହୁଅ ନବୁଡ଼ାଇ ଭେଳା
ଜାରେ ଦନାର୍ଦ୍ଧନାନ,ତେଜି ହେଲେଦୀନ,ଭଜହେ ସୁଜନେ ସିନ୍ଧୁବାଳା
କରରେ ଦର୍ଶନ ସାତ୍ତ୍ୱିକ ଜୀବନ ହୋଇବ ଆଉନକର ହେଳା ।
ଦୟାନିଧିବୋଲେ, ହେଭାଇ ସକଳେ, ହରି୨ ବୋଲି ବେଳଗଲା ।୩।

(ଯବନିକା ପତନ) (ପ୍ରସ୍ଥାନ)

—— —— ※ —— ——

ସମାପ୍ତ ।

# ବିଜ୍ଞାପନ ।

—*—

ନୂତନ ପୁସ୍ତକ !   ନୂତନ ପୁସ୍ତକ !!   ନୂତନ ପୁସ୍ତକ !!!

ଉତ୍କଳର ସୁପରିଚିତ କବି ଶ୍ରୀ ଦୟାନିଧି ଦାସଙ୍କ ରଚିତ ।

## ଲକ୍ଷ୍ମୀଲୀଳା ନାଟକ ।

ଏହାର ବିଶେଷ ପରିଚୟ ଦେବା ଅନାବଶ୍ୟକ । କାରଣ ଏହା ବହୁସ୍ଥାନରେ ଅଭିନୀତ ହୋଇଅଛି । ଦର୍ଶକଗଣ ବହୁବାର ଆମ୍ଭ ନିକଟରେ ଉକ୍ତ ପୁସ୍ତକ ତତ୍ତ୍ୱ କରି ନପାଇ ହତାଶ ହେବାର ଦେଖି ବହୁ ଅର୍ଥ ବ୍ୟୟରେ ଏହାକୁ ମୁଦ୍ରଣ କଲୁଁ । ଗ୍ରାହକଗଣ ଏହାକୁ ସାଦରେ ଗ୍ରହଣ କଲେ ସୁଖୀ ହେବୁଁ ।

କବି ଶ୍ରୀ ଦୟାନିଧି ଦାସଙ୍କ କୃତ

## ଦ୍ରୌ ପ ଦୀ ହ ର ଣ ଗୀ ତ ନା ଟ୍ୟ ।

ଏଥିରେ ନୂତନ ଓ ପୁରାତନ ରାଗ ରାଗିଣୀ ଯୁକ୍ତ ଅନେକ ସଂଗୀତ ଦିଆ ହୋଇଅଛି । ପୁସ୍ତକ ପଢିବାକୁ ଆରମ୍ଭ କଲେ ଶେଷ ନ କରି ରହିପାରିବ ନାହିଁ । କାମ୍ୟକ ବନରେ ପାଣ୍ଡବମାନେ ବାସକରୁଥିବା ସମୟରେ ଦୁର୍ଯ୍ୟୋଧନଙ୍କ ଆଦେଶରେ ଜୟଦ୍ରଥ ଦ୍ରୌପଦୀଙ୍କୁ ହରଣ କରି ନେଇଯିବା ଓ ଏହି ଜାଣି ପାଣ୍ଡବମାନେ ଜୟଦ୍ରଥଙ୍କୁ ନାନାପ୍ରକାର ଅପମାନ ଓ ଦଣ୍ଡ ଦେଇ କୃଷ୍ଣାଙ୍କୁ ଉଦ୍ଧାର କରିବା ପ୍ରଭୃତି ବିଷୟମାନ ସୁମଧୁର ଛନ୍ଦରେ ବର୍ଣ୍ଣିତ ଗୀତଗୁଡ଼ିକ ଅତ୍ୟନ୍ତ ମନୋହର ହୋଇଅଛି ।

ମୂଲ୍ୟ ୫° ।

ପ୍ରାପ୍ତିସ୍ଥାନ

ମାନେଜର, ଶକ୍ତି ପ୍ରେସ

ପୁରୀ ।

Digitized by srujanika@gmail.com